# ଜୈନଧର୍ମ

**Jain Dharma**

(ROBERT O BALLOU ଓ HERMANN JACOBI ଙ୍କ
ଲେଖା ଉପରେ ଆଧାରିତ)

ଲେଖକ :
**ଶ୍ରୀ ରାଜକିଶୋର ପଟ୍ଟନାୟକ**

ପ୍ରକାଶକ :
**ଧର୍ମ ପୁସ୍ତକାଳୟ**
କଟକ-୨

ପ୍ରଥମ ସଂସ୍କରଣ—୧୯୮୮

ମୂଲ୍ୟ : ଛଅଟଙ୍କା

**JAIN DHARMA**

By R. K. Pattanayak

Ed. G. C. Patra

Can be had of
ORISSA BOOK STORE
Cuttack-2

**Price Rs. 6/-**

## ବିଭିନ୍ନ ଧର୍ମଶାସ୍ତ୍ର

# ଜୈନ ଧର୍ମ

ବେଦ ଉପରେ ହିନ୍ଦୁ ଧର୍ମ ଠିଆ ହୋଇଛି । ମହାଭାରତ ଯୁଦ୍ଧ ପରେ ଏହି ହିନ୍ଦୁ ଧର୍ମର ନାମ ହେଲା ବ୍ରାହ୍ମଣ୍ୟ ଧର୍ମ ।

ମହାଭାରତ ଯୁଦ୍ଧ ଆଜକୁ (୧୯୮୮) ପାଞ୍ଚ ହଜାର ବର୍ଷ ତଳର କଥା । ସେଇ ଯୁଦ୍ଧରେ ଭାରତର କ୍ଷତ୍ରୀୟ ଶକ୍ତି ଧ୍ୱସ୍ତବିଧ୍ୱସ୍ତ ହୋଇ ଯାଇଥିଲା । ସମସ୍ତେ ଜାଣନ୍ତି ଯେ, ମହାଭାରତ ଯୁଦ୍ଧରେ କୁରୁଙ୍କର ଏଗାର ଓ ପାଣ୍ଡବଙ୍କର ସାତ ଏରୂପ ଅଠର ଅକ୍ଷୌହିଣୀ ସୈନ୍ୟ ମରିଥିଲେ । ମହାଭାରତ ଯୁଦ୍ଧ ଶେଷରେ ଅଶ୍ୱତ୍ଥମାଙ୍କୁ ମିଶାଇ କୃପ ଆଦି କରି ସାତ ଆଠ ଜଣ ବଞ୍ଚିଥିଲେ । ବିଶ୍ୱାସ କରାଯାଏ ଯେ, ଏଥିରୁ ଦୁଇଜଣ ଅଦ୍ୟାବଧି ଜୀବିତ ।

ଏହାର ଅଢ଼େଇ ହଜାର ବର୍ଷ ଭିତରେ ଭାରତରେ ଗୋଟିଏ ପୁରୁଷ ବା ପିଢ଼ିକୁ ପଚିଶି ବର୍ଷ ଧରିଲେ ଶହେ ପୁରୁଷ ଗତ ହୋଇଥିଲା । ଏହି ଶହେ ପୁରୁଷ ବ୍ରାହ୍ମଣମାନେ ଧର୍ମଶାସ୍ତ୍ରକୁ ନିୟନ୍ତ୍ରଣ କରିଥିଲେ ।

ବ୍ରହ୍ମା, ବ୍ରହ୍ମ ଓ ବ୍ରାହ୍ମଣ ପରସ୍ପର ଅର୍ଥ ବୁଝାଇବା ଅବସ୍ଥାରେ ପହଞ୍ଚିଥିଲା ।

ମହାଭାରତ ଯୁଦ୍ଧ ପର୍ଯ୍ୟନ୍ତ କ୍ଷତ୍ରୀୟମାନେ ଧର୍ମଶାସ୍ତ୍ରର ଆଧାର ଥିଲେ । ମହାଜନ ଙ୍କର ପ୍ରବେଶ ପରେ ଯେଉଁଦିନ କ୍ଷତ୍ରୀୟ ରାଜା

ବ୍ରାହ୍ମଣ ଶିଷ୍ୟ ନେଲେ, ସେହିଦିନ ଧର୍ମ ଜଗତରେ ଅପୂର୍ବ ସମ୍ବାଦ ହୋଇଥିଲା ବୋଲି ଉପନିଷଦରୁ ଜଣାଯାଏ ।

ଏହି ଶତେ ଷୀତିର ନିୟମ ହେଲା ଯେ, ବ୍ରାହ୍ମଣଙ୍କ ପାଇଁ ଗୋଟିଏ ଆଇନ ଓ ଅନ୍ୟ ସମସ୍ତଙ୍କ ପାଇଁ ଆଉ ଗୋଟିଏ । ଓଡ଼ିଆରେ ବି କଥା ଅଛି— ବ୍ରାହ୍ମଣ ପୁଅ ମାଙ୍କଡ଼ ମାରିଲେ ଦୋଷ ଲାଗେ ନାହିଁ ।

ପାପ କ'ଣ ଓ ପାପରୁ କିପରି ବିମୋଚନ ବା ପ୍ରାୟଶ୍ଚିତ ହୋଇପାରିବ—ଏହାରି ଉପରେ ଧର୍ମଶାସ୍ତ୍ର ବଦଳି ବଦଳି ଚାଲିଲା ।

ଏଥିରେ ଅତ୍ୟାଚାର ପରିମାଣ ବଢ଼ିଲା । କ୍ଷତ୍ରୀୟମାନେ ସେମାନଙ୍କର ପ୍ରାସଙ୍ଗିକତା ହରାଇବାରୁ ବିଦ୍ରୋହ ଭାବ ପ୍ରକାଶ କଲେ ।

କ୍ଷତ୍ରୀୟମାନେ ଯୁଦ୍ଧରେ କ୍ଷୟ ହୋଇଯିବାରୁ ଅନ୍ୟ ଜାତି (ପ୍ରାୟ ବୈଶ୍ୟ କିଛି ଶୂଦ୍ର ଓ କେତେକ ଭ୍ରଷ୍ଟ) ଶାସନ ଅଧିକାର କରିନେଇ ବ୍ରାହ୍ମଣମାନଙ୍କୁ ବଡ଼ ସ୍ଥାନ ଦେଲେ ।

ମନେ ରଖିବା ଭଲ ଯେ ଦ୍ୱାରକା, ହସ୍ତିନାପୁର ଲଗାଇ ସମସ୍ତ ସମକାଳୀନ ଯୁଦ୍ଧ କରିଥିବା ଶାସକମାନେ ଓ ସୈନ୍ୟମାନେ କ୍ଷତ୍ରୀୟ ।

ଅକ୍ଷୌହିଣୀର ଅର୍ଥ ଜାଣିଥିବା ଦରକାର ।

ହାତୀ ଯେତିକି ରଥ ସେତିକି । ଏହାର

ତିନିଗୁଣ ଅଶ୍ୱ ଓ ପାଞ୍ଚଗୁଣ ପଦାତିକ ଅର୍ଥାତ୍, ଏକ+ଏକ +ତିନି+ପାଞ୍ଚ ହେଲା ଦଶ ଭାଗ । ସେତେବେଳେ ମଧ୍ୟ ଦଶ ଇତ୍ୟାଦି ସଂଖ୍ୟାର ତାତ୍ପର୍ଯ୍ୟ ଥିଲା ।

ହାତୀ ହେଲା ଏକୋଇଶି ହଜାର ଆଠଶହ ସତୁରି । ଏହାର ଦଶଗୁଣ ହେଲା ଦୁଇ ଲକ୍ଷ ଅଠର ହଜାର ସାତଶହ । ଅଠର ଅକ୍ଷୌହିଣୀ ହେଲା ଅଣଚାଳିଶି ଲକ୍ଷ ଛତିଶ ହଜାର ଛଅଶହ ବା ମୋଟାମୋଟି ଚାଳିଶି ଲକ୍ଷ ।

କେବଳ ଉତ୍ତର ଭାରତ—ଗୁଜରାଟରୁ ବିହାର ଓଡ଼ିଶା ସମେତ ହିମାଳୟରୁ ବିନ୍ଧ୍ୟ ମଧ୍ୟରେ ଥିବା ଭୂଖଣ୍ଡରେ ଚାଳିଶ ଲକ୍ଷ କ୍ଷତ୍ରିୟ ଧ୍ୱଂସ ପାଇଥିଲେ ।

ଏହାର ଆଉ ପାଞ୍ଚ ହଜାର ବର୍ଷ ଆଗରୁ ପରଶୁରାମ ଅବତାରରେ ଏକୋଇଶି ଥର କ୍ଷତ୍ରିୟ-ନିପାତ କରିଥିଲେ ।

ଭାରତ ବର୍ଷର ଇତିହାସରେ ଏଇ ସମୟର ପ୍ରଭାବରେ ଦୁଇ ଜଣ କ୍ଷତ୍ରିୟ ହିନ୍ଦୁ ମତର ବିରୋଧ କରି ଧର୍ମପ୍ରଚାର କରିଥିଲେ । ସେମାନେ ହେଲେ—କପିଳବସ୍ତୁର ଶାକ୍ୟ ମୁନି ଓ ତାହାର ଆଖପାଖ ସାମନ୍ତ ମହାବୀର ।

ଏହି ଦୁଇ ଧର୍ମପ୍ରବର୍ତ୍ତକ ଏବେର ବିହାର ରାଜ୍ୟର ଆଖପାଖ ଅଞ୍ଚଳର । ସେମାନଙ୍କର ନାମରେ ମଧ୍ୟ ସାମଞ୍ଜସ୍ୟ ରହିଛି ।

ଜୈନ ଧର୍ମର ପ୍ରବର୍ତ୍ତକ ମହାବୀର ବାପାଙ୍କ ନା ସିଦ୍ଧାର୍ଥ । ମାଆ ତ୍ରିଶଳା ଦେବୀ । ତ୍ରିଶଳା ଦେବୀ ମଗଧ ରାଜବଂଶ ସହିତ ସମ୍ପର୍କିତ ।

ବୌଦ୍ଧ ଧର୍ମର ପ୍ରବର୍ତ୍ତକ ଶାକ୍ୟମୁନିର ନାମ ମଧ୍ୟ ସିଦ୍ଧାର୍ଥ । ତାଙ୍କର ସାଧନାର କ୍ଷେତ୍ର ବିହାରର ରାଜଗୃହ ।

ମହାବୀରଙ୍କର ବଂଶ ଜଣେ ଜମିଦାର ଶ୍ରେଣୀର । ସିଦ୍ଧାର୍ଥଙ୍କର ବଂଶ ଜଣେ ଛୋଟ ରାଜା ଶ୍ରେଣୀର ।

ମହାବୀରଙ୍କର ଜନ୍ମସ୍ଥାନ ହେଲା କୁନ୍ଦଗ୍ରାମ । ଏହା ବୈଶାଳୀ ନିକଟରେ । ଏହା ଗୋଟିଏ ରାଷ୍ଟ୍ରର ବିଶ୍ରାମ ସ୍ଥଳ । ଏଠି ବେପାରୀ ଭିଡ଼ ହୋଇ ରହେ ।

ମଗଧର ରାଜବଂଶ ସେତେବେଳେ ଯାଏ ଜୈନ ମତର ପୃଷ୍ଠ-ପୋଷକତା କରୁଥିଲେ, ସେତେବେଳେ ଜୈନମତ ଅନୁକୂଳ ପରିବେଶ ପାଇଥିଲା ।

ନନ୍ଦ ବଂଶ ହେଉଛି ବ୍ରାହ୍ମଣ ରାଜବଂଶ ।

ଏହି ବଂଶର ଉଚ୍ଛେଦ କରିଥିଲେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଅର୍ଥାତ୍ ମୁରା ନାମକ ଜଣେ ଅବ୍ରାହ୍ମଣ ସ୍ତ୍ରୀ ଗର୍ଭର ସନ୍ତାନ ।

ଏହି ରାଜବଂଶ ଆଉ ବ୍ରାହ୍ମଣମାନଙ୍କୁ ବିଶେଷ ସୁବିଧା ନ ଦେବାରୁ ବ୍ରାହ୍ମଣ ମତର ବିରୋଧୀ ଧର୍ମମତ ଜୋର ଧରିଲା ।

ଏହାକୁ ପୂରଣ କଲେ ଜୈନ ମତ ଓ ବୌଦ୍ଧ ମତ ।

ଏହି ଦୁଇ ମତ ବେଦକୁ ମାନନ୍ତି ନାହିଁ ।

ତେଣୁ ବ୍ରାହ୍ମଣମାନେ ଏହି ଦୁଇ ମତବାଦକୁ ନାସ୍ତିକ ମତବାଦ ବୋଲି କହିଲେ ।

ବୌଦ୍ଧ ମତରେ ମଧ୍ୟ ବେଦକୁ ମାନେ ନାହିଁ । ସେ ନାସ୍ତିକ । ତୁମେ ଈଶ୍ୱରଙ୍କୁ ନ ମାନିଲେ ନାସ୍ତିକ ହେବ ନାହିଁ । ବେଦକୁ ଗ୍ରହଣ ନ କଲେ ନାସ୍ତିକ ହେବ । ଏହି ଦୁଇ ମତ ବେଦ ବିରୋଧୀ, ତେଣୁ ନାସ୍ତିକ ।

ଏହି ଦୁଇଟି ଧର୍ମରେ ମହାମତି ପ୍ରଭୃତି ସମାନ ।

ଜୈନ ଓ ବୌଦ୍ଧ ମତରେ ନୂଆ ଶବ୍ଦଟିଏ ଯୋଗ ହେଲା— ମହାତ୍ମା ।

ମହାନ୍ ଆତ୍ମା ହେଉଛି ମହାତ୍ମା । ହିନ୍ଦୁ ମତରେ ଏପରି ବିଷୟ ନାହିଁ ।

ପ୍ରଚଳିତ ହିନ୍ଦୁ ମତରେ ଅଢେଇ ହଜାର ବର୍ଷତଳେ ପ୍ରଧାନ କଥା ଥିଲା ଯେ ଠାକୁରଙ୍କ ପୂଜା, ହୋମ, ଯଜ୍ଞ ଓ ବଳିଦାନ ଦ୍ୱାରା ହେବ । ଯାହା ଚାହିଁବ ତାହା ପାଇବ ।

ସ୍ୱର୍ଗ ମିଳିବ । ଭଗବାନ ମିଳିବେ । ଏହି ସଂସାରରେ ସ୍ୱର ବର୍ଗର ସମୃଦ୍ଧି ଓ ସୁଖ ମିଳିବ । ଈଶ୍ୱର ଯୋଜନାବଦ୍ଧ ଲକ୍ଷର ନିୟନ୍ତ୍ରଣରେ ରଖାଗଲେ । ମଣିଷ ମଧ୍ୟ ଚର୍ବ୍ୟ-ଚୋଷ୍ୟ-ଲେହ୍ୟ ଆଦି ବିଭିନ୍ନ ପ୍ରକାରର ଖାଦ୍ୟ ଖାଇ ଅସଂଖ୍ୟ ପ୍ରକାରରେ ଦେହ-ସେବା କରି ମୁକ୍ତିକାମୀ ହେଉଥିଲା ।

ଏହି ମତ ବିରୁଦ୍ଧରେ ମହାବୀର ପ୍ରଥମ ପଦକ୍ଷେପ ନେଇଥିଲେ । ···ଦେହ କିଛି ନୁହେଁ । ଦେହ-ସର୍ବସ୍ୱ ଲୋକର ମୁକ୍ତି ନାହିଁ······ ···ପ୍ରାଣନାଶ ପ୍ରଧାନ ପାପ ··ନିଜେ ନାଶ ଯାଇପାର, ଅନ୍ୟ ପ୍ରାଣନାଶ କରିବ ନାହିଁ···ପ୍ରାଣ ସମସ୍ତଙ୍କର ରହିଛି ।

ମାଟି (କ୍ଷିତ) ଅପ୍ (ପାଣି) ତେଜ (ନିଆଁ) ମରୁତ୍ (ବାୟୁ) ମଧ୍ୟ ପ୍ରାଣସତ୍ତା ବା ଆତ୍ମାର ଅଧିକାରୀ । ଏହି ସ୍ୱର ମୂଳ ଉପାଦାନରେ ଜନ୍ମ ହୋଇଥିବା ବା ଚଳପ୍ରଚଳ ହେଉଥିବା ବା ଏହି ଉପାଦାନକୁ ଆଧାରକରି ଚେତ୍ ବା ଅଧା-ଚେତ୍ ବା ଅଚେତ୍ ସମସ୍ତେ ପ୍ରାଣୀ ଓ ଆତ୍ମାର ଅଧିକାରୀ ।

ଏ ସମସ୍ତଙ୍କ ପ୍ରତି ଉପଯୁକ୍ତ ବ୍ୟବହାର ଦେଖାଇବାକୁ ହେବ । ସେମାନଙ୍କର ଅନୁଭବ ଅଛି (FEELING) କିନ୍ତୁ ବିଚାରଶକ୍ତି (INTELLECT) ନାହିଁ । କାହାର ଅଙ୍ଗପ୍ରତ୍ୟଙ୍ଗ ରହିଛି ବା ହେଉଛି । ଏମାନେ ସମସ୍ତେ ପ୍ରାଣୀ ଅର୍ଥାତ୍ ଆତ୍ମାର ଅଧିକାରୀ ।

ଜୈନ ମତରେ ହଳଚଳ ହେବା ଆତ୍ମାର ଆଭାସ । ତେଣୁ ସେମାନେ ମଣିଷ, ପଶୁ, ଦେବତା, ନରକ-ବାସୀ, ଗଛଲତା ଓ ସ୍ଥିର ଉପାଦାନ ମାଟି, ପାଣି, ନିଆଁ, ପବନ, ଇତ୍ୟାଦିକୁ ଆତ୍ମାର ଅଧିକାରୀ ଭାବୁଥିଲେ ।

ବିଜ୍ଞାନର ଆଲୋକ ନ ଥିବାରୁ ବାୟୁ ଓ ପବନ ବା ହାୱାର ପ୍ରଭେଦ ଜାଣି ନ ଥିଲେ । ବାୟୁ ଓ ଆକାଶର (ମରୁତ୍ ଓ ବ୍ୟୋମ) ନିର୍ଦ୍ଦିଷ୍ଟ ରୂପରେଖ ପାଇ ନ ଥିଲେ ।

ଈଶ୍ୱରଙ୍କୁ ଖୋଜିବା ପାଇଁ ଏତେ ଜ୍ଞାନ ବା ବିଜ୍ଞାନର ଆବଶ୍ୟକତା ନ ଥାଏ । ତେଣୁ ଜୈନ ମତ ମୋଟାମୋଟି ଅହିଂସାର ଚରମ ରୂପର ଅଭ୍ୟାସ ଆରମ୍ଭ କଲେ ।

ଅହିଂସା ଅର୍ଥ ଅ-ହିଂସା । ଏହାକୁ ପାଳିବାକୁ ମଣିଷ ଗଲେ କେତେ ଅବା ମଲେ କେତେ ?

ଏହିସବୁ ତତ୍ତ୍ୱର ଚାଲିଥିଲା ବେଳେ ବୁଦ୍ଧଦେବ ଆସିଲେ । ଜୈନଶାସ୍ତ୍ର କହେ ଯେ ବୁଦ୍ଧଦେବ ମହାବୀରଙ୍କର ଶିଷ୍ୟ ଥିଲେ । ଏହା ମଧ୍ୟ ସମ୍ଭବ ।

କାରଣ ବୁଦ୍ଧଦେବ ତାଙ୍କର ସାଧନାର ପ୍ରଥମ ଅବସ୍ଥାରେ ଶରୀର-ପୀଡ଼ନ ଏତେ ଦୂର କଲେ ଯେ ତାଙ୍କର ଜୀବନ ଯିବା ଉପରେ ହୋଇଥିଲା ।

ସେଥିରୁ ରକ୍ଷା ପାଇଁ ବୁଦ୍ଧଦେବ କହିଲେ—ନାଁ, ଏଇ ଚରମ (EXTREME) ଅଭ୍ୟାସ ଭୁଲ । ମଧ୍ୟପନ୍ଥା ନଆଯିବା ଆବଶ୍ୟକ ।

ଦେହକୁ ତୁଚ୍ଛ ନ କରି ଗୌଣ କରାଯିବା ଉଚିତ୍ । ଉପବାସର ଅର୍ଥ ହେଉଛି ଅଳ୍ପ ଆହାର । ଦେହକୁ ଦେହ ସମ୍ଭାଳିଲା ପରି ରଖିବ । ଲୋକ-ସମାଜ ଯେଉଁ ସ୍ୱାର୍ଥଗତ ପାଳୁଛନ୍ତି ସେଇ ଅନୁସାରେ ଧର୍ମ ଚାଲିବ ।

ଫଳରେ ମହାବୀର ଜୈନ କହିଲେ ଆମିଷ ହେଉଛି ଅହିଂସାର ଶତ୍ରୁ । କାରଣ ନିଜେ ହାତରେ ନ ମାରି ଅନ୍ୟ ହାତରେ ମରାଇଲ ନିଜ ପାଇଁ ।

ଶାକ୍ୟମୁନି କହିଲେ—ଇଏ ପ୍ରମାଦପୂର୍ଣ୍ଣ । ବୌଦ୍ଧ ଭିକ୍ଷୁ ଭିକ୍ଷା ଗ୍ରହଣ କଲାବେଳେ କେଉଁ ପଦାର୍ଥ ଭିକ୍ଷା ପାତ୍ରରେ ନେବ, ତାକୁ ବାଛିବାର ବା ବାରିବାର କଥା ନୁହେଁ ।

ସମସ୍ତେ ଜାଣନ୍ତି ଶାକ୍ୟମୁନିଙ୍କର ମହାପ୍ରସ୍ଥାଣ ସମୟରେ କାରହା ମାଂସର ଶୁଖୁଆ ପାଇଁ ଶରୀରରେ କ୍ଷତିଗ୍ରସ୍ତ ହୋଇଥିଲେ ।

ଧର୍ମ ସବୁବେଳେ ସମାଜକୁ ଆଶ୍ରୟ କରିଥାଏ । ରାଜା ଧର୍ମ ପ୍ରତି ସହାନୁଭୂତି ନ ଦେଖାଇଲେ ସେ ଧର୍ମ ତିଷ୍ଠି ନ ପାରେ ।

ଜୈନଙ୍କର ଅହିଂସାରେ ଯୁଦ୍ଧ ଅସମ୍ଭବ । ରାଜାଙ୍କର ଶିକାର ଅସମ୍ଭବ । ଅନ୍ୟର ନିପୀଡ଼ନକୁ ସହିବା ଆବଶ୍ୟକ । ପ୍ରତିବାଦ, ପ୍ରତିରୋଧ ଓ ଶାସ୍ତିର ସ୍ଥାନ ନାହିଁ ।

ଶାସକ ଓ ରାଜା ତେବେ ଯୁଦ୍ଧ ନ କରି ରାଜ୍ୟ ହରାଇବେ । ନିଜର ପ୍ରଜାମାନଙ୍କୁ ବିନା କାରଣରେ ଅନ୍ୟର ଅଧୀନସ୍ଥ କରିଦେବେ ।

ଏମିତି ଧର୍ମ ଏଇ ସଂସାର ପାଇଁ ନୁହେଁ । ଧର୍ମ କହୁଥାଉ ଯେ ଯୁଦ୍ଧରେ ନୃଶଂସତା କରିବ ନାହିଁ । ବର୍ବର ପରି ପ୍ରାଣନାଶ କରିବ ନାହିଁ । ଯୁଦ୍ଧରେ ଶତ୍ରୁ ପକ୍ଷ ପ୍ରତି ସମଦୃଷ୍ଟି ଓ ସମବେଦନା ରଖିବ ।

ଏସବୁ ବୌଦ୍ଧ ଧର୍ମରେ ସ୍ପଷ୍ଟ ବାରଣ ନ ଥିଲା । ତେଣୁ ମଗଧର ରାଜା ପ୍ରଥମ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକ ହେଲେ ।

ସେ ଜନ୍ମରୁ ବୌଦ୍ଧ ନ ଥିଲେ । ପରେ ବୌଦ୍ଧ ହେଲେ । ତାଙ୍କର ପୁଅ ଅଶୋକ ଜନ୍ମରୁ ବୌଦ୍ଧ ଥିଲେ । ସେଇ ବୌଦ୍ଧ-ସ୍ତୂପ ଓ ବିହାର କରିଛନ୍ତି ।

ମାତ୍ର ସ୍ଥାମାସ୍ତୁ ମତରେ ଦୁଇଜଣ ଅଶୋକ ଜଣା ନ ଥିବାରୁ କବିତା, କିମ୍ବଦନ୍ତୀ ଓ ଧାରଣାରେ କେତେକ ପ୍ରମାଦ ରହିଯାଇଛି ।

ଜୈନମତ ଓ ବୌଦ୍ଧମତ ଓଡ଼ିଆ ମୂଳକରେ ସ୍ପଷ୍ଟ ସୂଚିତ ହୋଇନାହିଁ ।

ଜୈନ ମତରେ ପ୍ରଧାନ ବିଷୟ ହେଲା ଜ୍ଞାନ । ଜ୍ଞାନକୁ ସେମାନେ ଅସ୍ତ୍ର ବୋଲି କହୁଥାନ୍ତି । ଏଇ ଅସ୍ତ୍ର ହେଲା—ଉପାଦାନ ଅର୍ଥାତ୍ କ'ଣ ଜାଣିଲ ? ଆଉଟି ହେଲା—କି ପ୍ରକାରର ଜ୍ଞାନ ? ଅର୍ଥାତ୍ ବ୍ୟବହାର କରିବା କେମିତି ?

ଆମେ ଯେମିତି ଛୁରୀରେ ପରିବା କାଟିପାରୁ ଓ ମଣିଷ ମାରିପାରୁ । ଏଠି ଆମେ ଛୁରୀର ବ୍ୟବହାର ବା ଭାବ ବିଷୟରେ କହୁଛୁ । ସେମିତି ଜ୍ଞାନ ହେଲେ ବା କିଛି ବିଷୟ ଜାଣିଗଲେ ଆମେ ତାକୁ ଠିକ୍ ଭାବରେ ବା ଭୁଲ ବାଟରେ ବ୍ୟବହାର କରିପାରୁ ।

ନିଜର କଥା, ନିଜର ଚିନ୍ତା ଓ ନିଜର ଦେହକୁ ଭୁଲ ବାଟରେ ବ୍ୟବହାର କରିପାରୁ । ଠିକ୍ ବାଟ ଧରିବା ନେଇ ଜୈନ ମତ ।

ଜ୍ଞାନ ବା ଜାଣିବାକୁ ସେମାନେ ଦୁଇ ଭାଗରେ ବୁଝନ୍ତି । ତଥ୍ୟ ସଂଗ୍ରହ ବା କଥାଟା ବୁଝିବା ହେଲା ଗୋଟିଏ ଭାଗ । (COMPREHENSION) । ସେଇଠୁ ଆସିଲା ବଳୁର—ଏହାକୁ ବ୍ୟବହାର ନ କରି ରଖିଦେବା । ଏଇଠି ହେଲା—ତପସ୍ୟା ବା ସାଧନା ।

ମହାଭାରତରେ ଲେଖା ହୋଇଛି ଯେ କଠୋର ବଚନ ଆଘାତ ଦିଏ । ସେ ଆଘାତ ବହୁତ ଦିନ ରହେ ଓ ଦହେ ।

ସମସ୍ତେ ଜାଣନ୍ତି ଯେ କଲମ ତରବାରୀଠାରୁ ଅଧିକ ମାରାତ୍ମକ ।

ଜୈନମାନେ ଜ୍ଞାନକୁ ଅପବ୍ୟବହାର କରିବାର ବିରୋଧୀ । ମଣିଷକୁ ଜ୍ଞାନ ଦ୍ୱାରା ଦୁଃଖ ଦେବାକୁ ନାରାଜ । ତେଣୁ ସେମାନେ ତର୍କ-ବିତର୍କର ଭାଷ୍ୟ, ବ୍ୟାଖ୍ୟା ଇତ୍ୟାଦି ସୃଷ୍ଟି କରି ନାହାନ୍ତି ।

ଅନ୍ୟମାନେ ଯାହା ଭାବି ପାରନ୍ତି । ଆମେ କିଛି କଥା ଜାଣିଛୁ ବୋଲି ସେ କଷ୍ଟ ନ ପାଉ ।

ଏହିପରି ଭାବଧାରାର ପ୍ରଚାର ପାଇଁ ଜୈନମାନେ ଅନ୍ୟ ମତ ସହିତ ବିରୋଧରେ ପଡ଼ନ୍ତି ।

ଗୋଟିଏ ହେଲା ରହିବା ଜାଗା ବା ଆଶ୍ରୟ ସ୍ଥଳ । ବୌଦ୍ଧମାନେ ଏହାକୁ ହିନ୍ଦୁ ମଠର ଅନୁକରଣରେ ବୌଦ୍ଧ ବିହାର କହିଥାନ୍ତି । ଏଠାରେ ପ୍ରତିଦିନ ଭିକ୍ଷା କରି ଆସିଲା ପରେ ରହନ୍ତି । ଚତୁର୍ମାସ୍ୟାରେ ରହନ୍ତି । କିନ୍ତୁ ପ୍ରଚାର କରାଯାଏ ଯେ ବୌଦ୍ଧ-ଭିକ୍ଷୁମାନଙ୍କର କିଛି ନାହିଁ ।

ଜୈନମାନେ ଏହାର ବିରୋଧରେ କହନ୍ତି । ଘର ଅଛି ଓ ଘର ନାହିଁ ବୋଲି ଛଳନାର ପ୍ରଚାର କରାଯାଉଛି ।

ଉପନିଷଦ୍ ଆତ୍ମାରେ ଆସ୍ଥା ରଖନ୍ତି । ଜୈନମାନେ ଆତ୍ମା ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ଆତ୍ମାକୁ ମାନିବା ଅର୍ଥ ଭବିଷ୍ୟତରେ ପୁରସ୍କାର ମିଳିବାର ଭାବକୁ ମଧ୍ୟ ମାନିଯିବା । ତେଣୁ କର୍ମପ୍ରବାହ କେବେହେଲେ ନିସ୍ୱାର୍ଥ ହୋଇ ନ ପାରେ ।

ହିନ୍ଦୁ କର୍ମକାଣ୍ଡକୁ ବିରୋଧ କରାଗଲା ସତ । ବଦଳରେ ଯେଉଁ ଉଚିତ କର୍ମ ଓ ଧର୍ମମୂଳକ କର୍ମମାନ କରାଗଲା, ସେଗୁଡ଼ିକର ଲକ୍ଷ୍ୟ ସମାନ—କ'ଣ ମିଳିବ, ଏଇ ଚିନ୍ତା ।

ଏହାର ଆଉ ଟିକିଏ କାରଣ ଅଛି । ହିନ୍ଦୁମାନେ ନିଜକୁ ଅର୍ଥାତ୍ ନିଜର ସ୍ୱରୂପ ବା ଆତ୍ମାକୁ ନିଜ ଦେହରେ ଚିହ୍ନିବାକୁ ଚେଷ୍ଟା କରୁଥିଲେ ।

ଜୈନମାନେ ସେଇ ଆତ୍ମାକୁ ବାହାର ଜଗତର ଦୃଶ୍ୟରୁ ଚିହ୍ନିବାରେ ମନ ଦେଇଥିଲେ ।

ଅଶୋକ ଗଛରେ ଫୁଲ ଫୁଟାଇବାର ମାର୍ଗ ହେଲା ସୁବେଶା ନାରୀଟିଏ (ଅବିବାହିତା) ତାହାର ପାଦକୁ ଗଛରେ ଛୁଆଁଇବ । ବଉଳ (ବକୁଳ) ଫୁଲ ଭଲ କରି ଫୁଟାଇବାକୁ ଗଛ ମୂଳରେ ମଦ ଢାଳିବା ଆତ୍ମା ଥିବାର ପ୍ରମାଣ । ଜୈନମାନେ କହୁଥିଲେ ଚେତନା ହେଉଛି ଆତ୍ମା ।

ଆଉ ଏଇ ଆତ୍ମାର ମଧ୍ୟ ଭଲମନ୍ଦ ଓ ବାଛବିଚାର ରହିଛି । ବୌଦ୍ଧମାନେ ଏହି ପ୍ରକାରର ମତର ପୃଷ୍ଠପୋଷକତା କରୁ ନଥିଲେ ।

ଜୈନମାନେ ଦୃଢ଼ ଭାବରେ କହୁଥିଲେ ଜୀବ ହତ୍ୟାର ବିଭିନ୍ନ ପର୍ଯ୍ୟାୟ ରହିଛି । ବିନା କାରଣରେ ଧାଇଁ ଗୋଡ଼େଇ ସାପକୁ ମାରିବା ଜୀବହତ୍ୟା । ସାପ ସହିତ ଲଢ଼େଇ କରି ତାକୁ ମାରିବା ହତ୍ୟା । ସାପର ଚମଡ଼ା ପାଇଁ ତାକୁ ମାରିବା ମଧ୍ୟ ହତ୍ୟା । ସାପର ଗରଳକୁ ନେଇ ଔଷଧ କରିବାପାଇଁ ସାପକୁ ମାରିବା ମଧ୍ୟ ଜୀବହତ୍ୟା ।

କିନ୍ତୁ ହିନ୍ଦୁ ଜଗତରେ ହରିଣ ଚମ ଉପରେ ବସି ଆରାଧନା କଲେ ଠାକୁର ଶୁଣନ୍ତି । ବାଘ ଚମ ଉପରେ ବସି ଆରାଧନା କଲେ ଦେବୀ ସନ୍ତୁଷ୍ଟ ହୁଅନ୍ତି । ତେଣୁ ଚମଡ଼ା, ମାଂସ, ରକ୍ତ, ପର (ପକ୍ଷ) ଅନ୍ତ, ପିତ୍ତ, ଦାନ୍ତ, ହାଡ଼, ନଖ ଇତ୍ୟାଦି ପାଇଁ ହରିଣ, ମୃଗନାଭି, ଶାଳିଆ ପତଙ୍ଗ, ବାଘ, ହାତୀ, ଗଣ୍ଡା ଇତ୍ୟାଦି ଅସଂଖ୍ୟ ପ୍ରକାରର କାରଣ ପାଇଁ ବିଭିନ୍ନ ଜଳ-ସ୍ଥଳ-ବାୟୁର ପଶୁପକ୍ଷୀ ଇତ୍ୟାଦିଙ୍କୁ ବଧ କରାଯାଇପାରେ ।

ଦେବଦେବୀଙ୍କୁ ସନ୍ତୁଷ୍ଟ କରିବାପାଇଁ କେତେକ ବିଶେଷ ଦିନରେ ଓ ବିଶେଷ କାରଣରୁ ପ୍ରାଣୀ ହତ୍ୟା କରାଯାଇପାରେ ।

ଆଜି ମଧ୍ୟ ଏସବୁ ରହିଛି । ବଡ଼ ମନ୍ଦିରରେ ମାଛ ଭୋଗ ଦିଆଯାଉଛି । ଦେବୀର ବଳି ରହିଛି । ବ୍ୟବସ୍ଥା ମଧ୍ୟ ରହିଛି ।

ଜୈନମାନେ ଏହାର ବିରୋଧ କରନ୍ତି ।

କାର୍ଯ୍ୟ ଓ କାରଣ ଏକାଠି ଗୁନ୍ଥା । କାରଣରୁ ପାପ ଜନ୍ମ ହୋଇପାରେ । ତେଣୁ କାର୍ଯ୍ୟଟି ମଧ୍ୟ ପାପରେ ବୁଡ଼ି ରହିଛି । ଏହାକୁ କରୁଥିବା ଓ କରାଉଥିବା ଲୋକ ଖୁସି ହୁଏ ଭଲକାମ କରୁଛି ବୋଲି । କିନ୍ତୁ ପ୍ରକୃତରେ ସେ ପାପକାର୍ଯ୍ୟରେ ଆନନ୍ଦ ପାଉଥାଏ ।

ତେଣୁ ଜୈନମତ ହେଲା ଆନନ୍ଦର ନିଦାନକୁ (ଉପାଦାନ ଓ କାରଣ) ଭଲ କରି ବୁଝିବ । ଖାଲି ମନକୁମନ ଧର୍ମାତ୍ମା ବୋଲି ସର୍ଟିଫିକେଟ୍ ଦେଲେ ଚଳିବ ନାହିଁ ।

ଏଥିରୁ ଗୋଟିଏ ବିଷୟ ସ୍ପଷ୍ଟ ହେଉଛି ଯେ ସାମାଜିକ ପରିବେଶର ଶିକ୍ଷାଦୀକ୍ଷା ଓ ଆଗ୍ରହର ବଳରେ ନେଇ ଧର୍ମମତ ଓ ସାଧକର ଗୌରବ ।

ଗତ ଅଢ଼େଇ ହଜାର ବର୍ଷ ମଧ୍ୟରେ ଗାଉଁଲି ସାଧୁ ବା ମଫସଲ ସାଧକ ବିଶେଷ ସ୍ୱୀକୃତ ପାଇନାହାନ୍ତି । କଲିକତା, ମାନ୍ଦ୍ରାଜ, ବମ୍ବାଇ, ଦିଲ୍ଲୀ ଆଦି ଅଗୁଆ ଅଞ୍ଚଳରେ ବରେଣ୍ୟ ସାଧୁ ବାହାରିଛନ୍ତି । କଲିକତାରୁ ଦିଲ୍ଲୀକୁ ରାଜଧାନୀ ଉଠିଗଲା ପରେ କଲିକତା ମଧ୍ୟ ନିଖିଳ ଭାରତ ପରିସୀମାର ସାଧୁ ସୃଷ୍ଟି କରିପାରିଲା ନାହିଁ ।

ଅଚ୍ୟୁତାନନ୍ଦ ଇତ୍ୟାଦିଙ୍କ ପରେ ଗତ ପାଞ୍ଚଶହ ବର୍ଷ ବା ପଚିଶି ପୀଢ଼ିରେ ଓଡ଼ିଶା ଜଣେ ମଧ୍ୟ ଉପଯୁକ୍ତ ମାନର ସାଧକ ଦେଲା ନାହିଁ । ତେଣୁ ସବୁବେଳେ ମନେ ରଖିବାକୁ ପଡ଼ିବ ଯେ ପାରିପାର୍ଶ୍ୱିକ ସମାଜ ଉଚ୍ଚ ସ୍ତରର ନ ହେଲେ ଉଚ୍ଚମାନର ଧର୍ମମତ ମଧ୍ୟ ବାହାରି ପାରିବ ନାହିଁ ।

ଜୈନମତ ଓ ବୌଦ୍ଧମତକୁ ଏହି ଦିଗରୁ ବିଚାର କଲେ ସେହି ପୁରୁଣା ଶହେ ପୀଢ଼ି ତଳର ସ୍ଥାନୀୟ ଅବସ୍ଥା ଯେ ଧର୍ମମତକୁ ରୂପ ଦେଇଥିଲା ଓ ଏହାଛଡ଼ା ଅନ୍ୟ ବାଟ ନାହିଁ—ଏତିକ ବୁଝିହେବ ନାହିଁ କପରି ?

ଜୈନମତ କହେ—କାମନା (DESIRE) ନ ଥିଲେ ଦୁହାଯିବ

ଯେ ସେ ଗୃହଶୂନ୍ୟ ବା ବାରବୁଲା ଯାଯାବର । କିନ୍ତୁ ଏଥିରେ ମଧ୍ୟ ବଡ଼ ଓ ସାନର ପ୍ରଭେଦ ରହିଛି ।

ସମସ୍ତେ ନିଜକୁ ବଞ୍ଚେଇ ରଖିବାକୁ ସ୍ୱୃହାନ୍ତ । ଏଇଟା ଜୀବନର ଧର୍ମ୍ମ । ଗଛଲତା, ପଶୁପକ୍ଷୀ, କୀଟପତଙ୍ଗ ଓ ମଣିଷ କେହି ହେଲେ ମରଣକୁ ଭଲ ପାଇ ନ ପାରେ ।

ଜୈନମତର ପ୍ରତିଷ୍ଠାତା ମହାବୀର ଦେଖାଇଲେ ଯେ ଜୀବନକୁ ସମ୍ମାନରେ ମରଣ ଆଡ଼କୁ ଠେଲି ନେବା ହେଉଛି ସର୍ବୋତ୍ତମ ଧର୍ମ୍ମ ।

ଜୈନ ସାଧକଙ୍କର ମରିବାର ଧାରା ଅତି ଅଦ୍ଭୁତ । ଏହି ଧାରାକୁ ସେମାନେ କ'ଣ ପାଇଁ ଆରମ୍ଭ କଲେ ତାଙ୍କର ସାଧନା ସମାଜରେ ଗୃହୀତ କରାଇ ନେବା ମଧ୍ୟ ଅତି ଅଦ୍ଭୁତ ଓ କଷ୍ଟପ୍ରଦ ।"

ସାଧକ ଯେତେବେଳେ ଜାଣିବ ଯେ ତାହାର ମରଣ ନିକଟ ହୋଇ ଆସିଲା, ସେ ଗୋଟିଏ ଲୋକାଳୟକୁ ଯାଇ କିଛି ନଡ଼ା ଭିକ୍ଷା କରିବ ।

ତାକୁ ନେଇ ଗୋଟିଏ ଶୁଖିଲା ପରିଷ୍କାର ଜାଗାରେ ପୋକଯୋକ ଓ ଜୀବ ପିମ୍ପୁଡ଼ି ନଥିବା ଦେଖି ନଡ଼ା ପାରି ଦେଇ ତାହା ଉପରେ ଶୋଇ ରହିବ ।

ଏଇ ହେଲା ତାଙ୍କର ମରଣ–ତୀର୍ଥ ଆଡ଼କୁ ଯାତ୍ରା । ଖାଦ୍ୟ କମାଇ ଦେବେ । ଆଗରୁ ଉପବାସ କରି କରି ଅଭ୍ୟସ୍ତ ହୋଇଥିବେ । ଖାଦ୍ୟ ଗ୍ରହଣ ବନ୍ଦ ହେବ ।

ସେଇ ନଡ଼ା-ବିଛଣା ଉପରେ ସେ ବେଶି ହଲଚଲ

ହେବେ ନାହିଁ । ଖୁବ୍ ହେଲେ ସେଇଠି ସେ ଭିଡ଼ିମୋଡ଼ି ହେବେ । ଏତିକରେ ଦେହ ଯେତିକି ସାଷ୍ଟମ ହେଲା । ଗୁଳୁବୁଳ କରିବେ ନାହିଁ । ବିଛଣା ଛାଡ଼ିବେ ନାହିଁ । [ମଳମୂତ୍ର ବେଗ ହେଉଥିବା ସମ୍ଭବ । କିନ୍ତୁ ସେ ବିଷୟର ଉଲ୍ଲେଖ ନାହିଁ]

ସେମିତି ଖାଇଁ ରକ୍ତ ମାଂସ ଘର ରହିଲେ ମୂଷା ଆସି କାମୁଡ଼ିପାରେ । ମଶା ଡାଆଁସ ନିଶ୍ଚିତ କାମୁଡ଼ିବେ । ଜନ୍ଦା ପିମ୍ପୁଡ଼ି ଦେହକୁ ଖାଇବାରେ ମନ ଦେବେ ।

କିନ୍ତୁ ସାଧକ ସମ୍ଭାଳି ହୋଇ ରହିଥିବ । ହଲଚଲ ହେଲେ ସେମାନଙ୍କର ଖିଆଖିଇରେ ବାଧା ହେବ । ତାଙ୍କୁ ସେ ହଟିଇବ ନାହିଁ । ମୂଷା କାମୁଡ଼ି ଖଣ୍ଡିଆ କଲେ ବି ସେ ସମ୍ଭାଳିବ ।

ଏ ପ୍ରକାରର କୃଚ୍ଛ୍ର-ସାଧନା ଅଭ୍ୟାସ କଲେ ଏପରି ସହିସମ୍ଭାଳି ହେବ—ଯୁଦ୍ଧବନ୍ଦୀର ବା ଗୁପ୍ତଚର ବିଭାଗର ଶିକ୍ଷା କ୍ଷେତ୍ରର ଅନୁଭବୀ ଏହାର ଉତ୍ତର ଦେଇ ପାରିଲେ ଅବା ପାରିବେ ।

ଶୁଣାଯାଇଥିଲା ଯେ ବାଲ୍ମୀକି ଋଷିଙ୍କ ଉପରେ ଉଇ ହୁଙ୍କା ହୋଇଯାଇଥିଲା । ସେଇ ହୁଙ୍କା ଭିତରୁ ରାମ ନାମ ଶୁଭୁଥିଲା ।

ପୁଣି ଶୁଣାଯାଉଛି ତିନି ଚାରି ହଜାର ବର୍ଷ ତଳର ଗ୍ରୀକ ସାଧକଙ୍କୁ ଚମଡ଼ୁଙ୍କୁଣୀ ଖାଇଯାଇ କଙ୍କାଳ କରିଦେଇଥିଲା ମରଣ ଆଗରୁ ।

ଭାରତବର୍ଷରେ ଜଣେ ଅଧେ ନୁହନ୍ତି ବହୁତ ସାଧକ ଏହି ପ୍ରକାରରେ ନିଜର ମୃତ୍ୟୁ ବରଣ କରୁଥିଲେ । ଏହାକୁ ଇଚ୍ଛା ମୃତ୍ୟୁ ବା ଆତ୍ମହତ୍ୟା ଯାହା କୁହାଯାଇପାରେ । କିନ୍ତୁ ଅସାଧାରଣ

ମାନସିକ ବଳ ଦ୍ୱାରା ଓ କଠୋର ଢନର ଅଭ୍ୟାସ ଦ୍ୱାରା ନିଜର ମରଣ-ଶୀଳ ଶରୀରକୁ ଜୈନ ସାଧକମାନେ ମନର ନିୟନ୍ତ୍ରଣରେ ରଖିଥିଲେ ।

ଜଣାଯାଇଛି ଯେ ଖ୍ରୀଷ୍ଟିଆନ ଧର୍ମର ଆଦ୍ୟଯୁଗରେ ଯେତେବେଳେ ଅଣ-ଖ୍ରୀଷ୍ଟିଆନମାନେ ଖ୍ରୀଷ୍ଟିଆନମାନଙ୍କୁ ନିଆଁରେ ପୋଡ଼ି ଦେଉଥିଲେ ସେତେବେଳେ ବହୁତ ଧର୍ମ-ପ୍ରାଣ ବ୍ୟକ୍ତି ସଜ୍ଞାନରେ ପୋଡ଼ି ହେଉଥିଲେ । ନିଆଁରୁ ପଳାଇ ନାହାନ୍ତି ।

ହିନ୍ଦୁମତରେ ସହମରଣ ମଧ୍ୟ ଏହି ପ୍ରକାରର ବିଶ୍ୱାସ, ଧର୍ମ-ଆସ୍ଥା ଓ ନିଷ୍ଠାର ପ୍ରମାଣ ।

ଏଥିରୁ ବୁଝାଯାଉଛି ଯେ ମନ ହେଉଛି ଦେହ ଓ ଦେହର ଇନ୍ଦ୍ରିୟମାନଙ୍କର ପ୍ରଭୁ । ମନ ସେଇପରି ଦୃଢ଼ ଓ ଶୃଙ୍ଖଳିତ ହୋଇଥିଲେ ଇନ୍ଦ୍ରିୟମାନେ ଅପ୍ରାସଙ୍ଗିକ ।

ଆଜୀବନ ବ୍ରହ୍ମଚର୍ଯ୍ୟ ପାଳିବା ମଧ୍ୟ ଏଇ ଇନ୍ଦ୍ରିୟ-ନିୟନ୍ତ୍ରଣର ଗୋଟିଏ ଜଣାଶୁଣା ଢଙ୍ଗ । ଆଧୁନିକ ବିଜ୍ଞାନ-ବହୁଳ ଯୁଗର ସ୍ପେସ୍ (ଅନ୍ତରୀକ୍ଷ) ପରିକ୍ରମା ଓ ବିଶେଷ ପ୍ରକାରର ଯୁଦ୍ଧ ପାଇଁ ଯେଉଁ ଟ୍ରେନିଂ ଦିଆଯାଏ ସେଥିରେ ଇନ୍ଦ୍ରିୟର ପ୍ରବୃତ୍ତି ଓ ସ୍ୱାଭାବିକ ଗୁଣକୁ ସୁନିୟନ୍ତ୍ରିତ କରାଯାଏ ।

ଜୈନମତରେ ରୋଗକୁ ପ୍ରଧାନ ଶତ୍ରୁ ରୂପେ ଧରାଯାଏ । ସେମାନେ ମନେ କରନ୍ତି ଯେ ରୋଗ ହେବା ଉଚିତ ନୁହେଁ ।

ରୋଗ ହେଲେ ତାହାର ସେବାକାରୀ ଆତ୍ମୀୟ ବିରକ୍ତ ହୁଅନ୍ତି । କିଛି ଦିନ ପରେ ରୋଗୀ ମଧ୍ୟ ସେଇ ସେବାକାରୀମାନଙ୍କ ଉପରେ

ଚଢ଼େ । କେଣୁ ରୋଗ ନ ହୋଇ ସମସ୍ତ ଚେଷ୍ଟା ଜୈନମାନେ କରିଥାନ୍ତି ।

କୋଧହୁଏ ତାଙ୍କର ମତ ଯେ ଖାଦ୍ୟ ରୋଗର କାରଣ । ରୋଗ ନ ଆଣିବାର ପ୍ରଧାନ ଉପାୟ ହେଉଛି ଧାର୍ମିକ ଉପବାସ । ଏହାକୁ ସାରା ଭାରତରେ ଲଂଘନ କୁହାଯାଏ । ପାଶ୍ଚାତ୍ୟ ଦେଶରେ ଫାଷ୍ଟିଙ୍ଗ୍ ନ କରି SLIP MEALS କରିଥାନ୍ତି ।

ଏଇ ସରଣର କାର୍ଯ୍ୟାନୁଷ୍ଠାନରୁ ବୁଝାଯିବ ଯେ ସମକାଳୀନ ସାମାଜିକ ପରିସରରେ କାହାରି ବିଶେଷ କିଛି କାର୍ଯ୍ୟ ନ ଥିଲା ।

ବୁଦ୍ଧ ମାନେ ଘର ଛାଡ଼ି ଏକୁଟିଆ ବଣରେ ସାଧନା କରୁଥିଲେ । ଜୈନମାନେ ବୁଲିବୁଲି କରି ଧର୍ମ କଥା କହି ସମୟ କଟାଉଥିଲେ । ସେଥିପାଇଁ ଏଇ ଧର୍ମ ଆଜିର ଆଧୁନିକ ସମାଜରେ ଉପଯୁକ୍ତ ହୋଇ ପାରୁନାହିଁ ।

ମଣିଷ କିଛି କର୍ତ୍ତବ୍ୟ କର୍ମ ବା କାମଦାମ କରିବ ନା ଖାଲି କାମର ପାପ-ପୂଣ୍ୟ ହିସାବକୁ ମାପୁଥିବ । ଅଢ଼େଇ ହଜାର ବର୍ଷ ତଳେ ଏହି ପ୍ରକାରର ଜୀବନ ପାଇଁ ଗ୍ରାହକତା ଥିଲା । ଏବେ ସେଇଠା ଆସି ଉହିଛି ନିରାମିଶାଷୀ ହେବାରେ ।

ସମସ୍ତେ ଧର୍ମଗୁରୁଙ୍କର ପରିପୂରକ । ଜୈନମାନେ ଆମିଷ ଛୁଅନ୍ତି ନାହିଁ । ନୈଷ୍ଠିକ ବୁଦ୍ଧ ମାନେ ମଧ୍ୟ ଆମିଷ ସେବନ୍ତି ନାହିଁ । ଅନ୍ୟ କେତେକ ଲୋକ ନିର୍ଦ୍ଦିଷ୍ଟ ଦିନରେ (ରବି, ସୋମ, ଗୁରୁବାର ଇତ୍ୟାଦି) ଆମିଷରେ ହାତ ପକାନ୍ତି ନାହିଁ । କେତେକ ନିୟମିତ ଆମିଷ ଖାଆନ୍ତି । ଦକ୍ଷିଣ ଓ ଉତ୍ତର ଭାରତରେ ଆମିଷ ଉପରେ ସ୍ୱତନ୍ତ୍ରତା ଅଛି ।

କିନ୍ତୁ ଖାଦ୍ୟରେ ଈଶ୍ୱରପ୍ରାପ୍ତି ବା ପରମପଦ ଲାଭ କ'ଣ ସମ୍ଭବ ? ଏହାର ସ୍ପଷ୍ଟ ଉତ୍ତର କୌଣସି ଧର୍ମମତ ଦେଇ ନାହିଁ । ଏପରିକି ଉତ୍ତରାଞ୍ଚଳ, ଆସାମୀୟ, ଉତ୍ତର ଭାରତ ଓ ଦକ୍ଷିଣ ଭାରତର ବଙ୍ଗଳା ବ୍ରାହ୍ମଣ ଓ ଅବ୍ରାହ୍ମଣ ସମାଜରେ ଏଇ ଆମିଷ ଓ ନିରାମିଷ ଭାଗ-ବିଭାଗର ଧର୍ମଭିତ୍ତିକ ରୂପ ନାହିଁ । ଯାହା ଅଛି ସେତିକ ଗଢ଼ାଚାଲିବା ।

ଜୈନ ମତରେ ବିବିଧ ଜ୍ଞାନକୁ ଗୁରୁତ୍ୱ ଦିଆଯାଇ ନାହିଁ । କାରଣ ପ୍ରଚଳିତ ହିନ୍ଦୁ ମତ ଜ୍ଞାନ ଉପରେ ଗୁରୁତ୍ୱ ଦେଉଥିଲା । ଜୈନ ମତ ହିନ୍ଦୁମତର ବିରୋଧ କରି କହିଲେ—

ଯିଏ ଗୋଟିଏ ବିଷୟ ଜାଣିଛି, ସେ ସବୁ ବିଷୟ ଜାଣିପାରିଛି । ..ଯିଏ ଅନେକ ବିଷୟ ଜାଣିଛି, ସେ କେବଳ ଗୋଟିଏ ବିଷୟ ଜାଣିଛି । କାରଣ ପ୍ରକୃତ ଜ୍ଞାନ ଗୋଟିଏ । ଭିଏ ବହୁତ ରୂପରେ ଆସିପାରେ କିନ୍ତୁ ବହୁତ ପ୍ରକାରର ନୁହେଁ । ସେମିତି ଅନେକ ପ୍ରକାରର କ୍ଷତିକାରକ କାର୍ଯ୍ୟ ରହିଛି । ସ୍ତର ଓ ପ୍ରକାର ଭେଦ ରହିଛି । କିନ୍ତୁ ସଂଯମ ବା ନିୟନ୍ତ୍ରଣରେ ସ୍ତର ଓ ପ୍ରକାର ନାହିଁ ।

ସଂଯମ ବା ବାରିହୋଇ ରହିଯିବା ହେଲା ଜୈନ ମତର ଭିତ୍ତିଭୂମି ।

ଜୈନମାନେ ଦୁଃଖ ବା କଷ୍ଟ (PAIN)ର କାରଣ ବୁଝାଇଛନ୍ତି । ବୌଦ୍ଧମାନେ କହନ୍ତି କାମନାରି ବିନାଶ ହେଉଛି ଦୁଃଖର (କଷ୍ଟ pain) ବିନାଶ । ଜୈନମାନେ କହନ୍ତି ମୂଳ ହେଲା *WARTH ବା କୋପ ବା କ୍ରୋଧ ବା ରାଗ ।

* କ୍ରୋଧ ଥିଲେ ଜାଣିବ ଦେହ ଅଛି ।

❊ ଗର୍ବ ଥିଲେ ଜାଣିବ ଠକେଇ ରହିଛି ।
❊ ଠକେଇ ଥିଲେ ଜାଣିବ ଲୋଭ ରହିଛି ।
❊ ଲୋଭ ଥିଲେ ଜାଣିବ ସ୍ନେହ, ପ୍ରେମ ଆଦି ରହିଛି ।
❊ ଏଇ ଆକର୍ଷଣ ଥିଲେ ଜାଣିବ ଘୃଣା ଅଛି ।
❊ ଘୃଣା ଥିଲେ ଜାଣିବ ବସ୍ତୁରର ଭ୍ରମ ଅଛି ।
❊ ବସ୍ତୁର ବିଭ୍ରାନ୍ତ ଥିଲେ ଜାଣିବ ନୂତନର ଭ୍ରୂଣ ଅଛି ।
❊ ଏହି ଭ୍ରୂଣ ଥିଲେ ଜାଣିବେ ନୂଆର ଜନ୍ମ ଅଛି ।
❊ ଜନ୍ମ ଥିଲେ ଅବଶ୍ୟ ମରଣ ଅଛି ।
❊ ମରଣ ପରେ ଜାଣିବ ନରକ ରହିଛି ।
❊ ନରକ ଥିଲେ ଜାଣିବ ତୁମେ ରହିଛ ।
❊ ନିଜେ ରହିଛ ତେବେ ଜାଣିବ ସେ ଦୁଃଖ ପାଉଛ ।

ଏଇ ମତ ଯୁକ୍ତି ନୁହେଁ । ଅନୁଭବ ନୁହେଁ । ପରୀକ୍ଷା-ସାପେକ୍ଷ ନୁହେଁ । କିନ୍ତୁ କ୍ରୋଧରୁ ଦୁଃଖ ଜନ୍ମ ହେବା ହେଲା ବିଶ୍ୱାସ ।

ଅତେଇ ହଜାର ବର୍ଷ ଭିତରେ ପଦ୍ଧତି ମଣିଷ ଏହାକୁ ନିଜର କରିପାରିନାହିଁ । ସବୁ ସେ ଚପି ଭଲ ବା ସେ ହଳିଲା ପାଣିକୁ ଗେଡ଼ ବଢ଼ାଏ ନାହିଁ । ସେ କାହାର ନଅ ଛଅରେ ନ ଥାଏ । ମାତ୍ର ସ୍ୱଭାବରେ ଠିକ୍ । କିନ୍ତୁ ସଂସାର ହେଉଛି ବିଭିନ୍ନ ଲୋକଙ୍କର ସଂଘାତ । ସେମାନେ ରାଇଟ୍ ସାଇଡ ଓ ରଙ୍ଗ ସାଇଡ଼ ଦୁଇ ଆଡ଼େ । ତେଣୁ ଏଇ ମତକୁ ପୂଜା କରି ବଞ୍ଚିରହିବା ସମ୍ଭବ ନୁହେଁ ।

ସେତେବେଳେ ବି ଲୋକ ଏହାକୁ ନେଇ ତର୍କ ପ୍ରତିବାଦ କରୁଥିଲେ । ତେଣୁ କୁହାଗଲା ଯେ ଯେଉଁମାନେ ଭ୍ରମ କଥାରେ—ହାଁ ଜୀ ହାଁ ଜୀ—ନ କରିବେ ତାଙ୍କଠାରୁ ଦୂରେଇ ଯାଅ ।

ଗୀତାର ମଧ୍ୟ ସେଇ ଉପଦେଶ ।

ବୌଦ୍ଧମାନଙ୍କର ମତ କ'ଣ ଜଣାନାହିଁ ।

ସମସ୍ତଙ୍କ ପାଖରୁ ଅଲଗା ହୋଇ ଯାଇ ଜୈନ ଏକୁଟିଆ ବୁଲିବ । ସ୍ତ୍ରୀ ରହିବା ଅର୍ଥ ବ୍ରହ୍ମଚର୍ଯ୍ୟରେ ବାଧା । ତେଣୁ ଏକୁଟିଆ ହୋଇ ରହିବା ହେଲା ମାର୍ଗ ।

ଏଇ ମାର୍ଗରେ ସ୍ୱେଚ୍ଛା ବ ଉପସ୍ଥିତ କରେ । ତାହାର ଦରକାର ଭିକ୍ଷା ପାତ୍ର ଓ ପିନ୍ଧିଥିବା ଆପରନ୍ ଓ ଗରମ ପୋଷାକ । ନ ହେଲେ ସେ ହତଆର ଚଳାଏ । ...ଜୈନମତ ହେଲା ଏ ସବୁ ସମ୍ଭବ । ତୁମକୁ ବାଘ, ସାପ, ତସ୍କର ଓ ଖୁଣୀ ନାଟକେଦମ୍ କରିପାରନ୍ତି । ...ସହିପିବା ହେଲା ତୁମର ଧର୍ମ—ଏକମାତ୍ର ଧର୍ମ ।

ଏହି ପ୍ରକାରର ଆଦର୍ଶ ତିଷ୍ଠିପାରେ ନାହିଁ । ତେଣୁ ସହିବାର ବ୍ୟବହାରିକ ଦିଗକୁ ସୁପାରିସ୍ କରିଯାଇ ନ ଥିବାରୁ—ସହିବା—ମୂଲ୍ୟହୀନ ହୋଇ ପଡ଼ୁଛି । ଖ୍ରୀଷ୍ଟିଆନ୍ ମତ, ବୌଦ୍ଧମତ ଓ ହିନ୍ଦୁମତ ଏଇ ସହିବା ଗୁଣକୁ ପ୍ରଶଂସା କରୁଛନ୍ତି । ଆଦର୍ଶ ବୋଲି କହୁଛନ୍ତି । କିନ୍ତୁ—ମତେ ଆଉ ମାରନାହିଁ, ମୁଁ ମଲେଣି—ଏଇ ବାକ୍ୟ ଦ୍ୱାରା ପ୍ରତିବାଦ ଓ ପ୍ରତିରୋଧକୁ ସଫଳ ରୂପ ଦେଇ ହୁଏ ନାହିଁ ।

ଜୈନ ମତର ଆରମ୍ଭ ହିନ୍ଦୁମତ ବିରୁଦ୍ଧରେ । ଯେ...ତେବେ...ନ କେଜାଣି କେଉଁ ଯୁଗରୁ ଅସଂଖ୍ୟ ଅସଂଖ୍ୟ ସାଧକ ଜାଣ ଜା...ରେ ସାଧନା ଦ୍ୱାରା ହିନ୍ଦୁ ଧର୍ମ...ଶ ସ୍ତକୁ ସୁପ୍ରତିଷ୍ଠିତ କରିଛନ୍ତି । ଜୈ...ମତ ଏହାର ବିରୋଧ ସବୁ ପ୍ରକାରରେ କରିବ । ହିନ୍ଦୁ ଶାସ୍ତ୍ର ଲେଖା ହୋଇଥିଲା ସଂସ୍କୃତରେ । ସଂସ୍କୃତକୁ କୁହାଯାଉଥିଲା ଦେବ-ଭାଷା ।

ତେଣୁ ମାନବ-ଭାଷା ପ୍ରାକୃତରେ ଜୈନ ଧର୍ମଗ୍ରନ୍ଥ କୁହାଗଲା ବା ଲେଖାଗଲା । ଧର୍ମ-ସଂସ୍ଥାପକ ମହାବୀର କହିଲେ ଆ...

ଦେବତାଙ୍କର ଅଛି ଓ ମନ୍ଦିରଙ୍କର ଅଛି । ସେମିତ ଭାଷା ମଧ୍ୟ ସମାନ ।

ବୌଦ୍ଧ ଧର୍ମମତ ଆସିବା ବେଳକୁ ଜୈନମତ ହିନ୍ଦୁମତ ବିରୁଦ୍ଧରେ କାମ କରି ଅନେକ ସମର୍ଥନ ନେଇ ସାରନ୍ତି । ତେଣୁ ବୌଦ୍ଧମତର ... । ହେଲା ପାଳି ।

ଏହିପରି ଭାବରେ ବାଦ-ବିବାଦ-ବିସମ୍ବାଦ ଧର୍ମରାଜ୍ୟରେ ମଧ୍ୟ ଚଳିଲା । ଠାକୁର (ଦେବ-ଦେବୀ) ହିଜରାଥାନ୍ତି ଅବା ମୁଖ୍ୟ ଗୌଣ ହୋଇଗଲେ । ବ୍ରହ୍ମା, ଇନ୍ଦ୍ର, ବରୁଣ ଆଦି ଦେବତା ଲୁଚିଗଲେ ।

ହିନ୍ଦୁଧର୍ମର ବେଦ, ଉପନିଷଦ ଇତ୍ୟାଦି ଗ୍ରନ୍ଥ ଜୈନଧର୍ମର ସେଇ ମୁଖ୍ୟ ଶାସ୍ତ୍ର ହେଲା ସିଦ୍ଧାନ୍ତ । ବୌଦ୍ଧ ଧର୍ମର ଶାସ୍ତ୍ର ହେଲା ତ୍ରି-ପୀଟକ ବା ତିନି ପେଡ଼ି ।

ଜୈନମତ ପ୍ରଚାରକଲେ ସାତଟି ମୂଳ ମତ ।

ପ୍ରଥମଟି ଜୀବ । ଏହାର ଅର୍ଥ ଥିଲା ପ୍ରାଣବାୟୁ ।

ଦ୍ୱିତୀୟଟି ହେଲା—ଅଜୀବ ବା ଅଜୀବତା । ଏହାର ଅର୍ଥ ମୂର୍ଖ ... । ଲୋକ ... ଭାବରେ କୁହିଁ ନାହିଁ ।

ତୃତୀୟଟି ହେଲା—ଆସ୍ରବ । ଏହାର ଅର୍ଥ ପ୍ରତିଶ୍ରୁତି ବା ସ୍ୱୀକାର । ଅସ୍ରାବ ହେଉଛନ୍ତି ନିଜର କର୍ମ ଦ୍ୱାରା ଆତ୍ମା ଉପରେ ଦାଗ ... ବା । ... ବୁଝିବାକୁ ହେବ ଦୃଷ୍ଟାନ୍ତ । ଯେମିତି ଖରାରେ ବସ୍ତ୍ର ସମସ୍ତ ... ହାତଗୋଡ଼ କଳା ହୋଇଯାଏ ।

ଆସ୍ରବର ବିପରୀତ ସମ୍ବର । ଏହାର ଅର୍ଥ ଯେ ନୌକାଟିର

କର୍ମ ଏପରି ହୋଇଛି ଯେ ଆତ୍ମା ଉପରେ କେବଳ କର୍ମ ଦୃଷ୍ଟ ଲାଗି ରହିଥାନ୍ତି ।

ଏହାର ବ୍ୟବହାରିକ ଦିଗ ହେଉଛି ପ୍ରତ୍ୟେକ ପ୍ରକାରର କର୍ମରୁ ନିଜକୁ ଉଦ୍ଧାର ପାଇଁ ଆତ୍ମା ନିଜ ନିଜ କର୍ମ ଦୃଷ୍ଟି କରିବା । ଶ୍ରୀ ଗୀତା ଏହି ମତର ସମର୍ଥନ କରେ । କର୍ମ ପ୍ରବାହରୁ ମଣିଷର ଜନ୍ମ-ସ୍ଥିତି-ଓ ମୃତ୍ୟୁ । ତେଣୁ କର୍ମପ୍ରବାହକୁ ଛାଡ଼ି ହେଉ ନାହିଁ । ଯେପରି କରିଲେ ଜୀବନରୁ ଆସିବ ।

ଆତ୍ମ ଗୋଟିଏ ହେଲା ଅନାଶ୍ରାବ । ଏହାର ଅର୍ଥ କଳୁଷ ଲାଗିନାହିଁ ।

ବିଶେଷ କଥା ହେଲା ଅପରିଶ୍ରାବ । ଏଇ ଲୋକର କର୍ମ ତାକୁ ଆଚ୍ଛାଦନ କରି ରଖିଛି । ସେ ହୋଗିବ—ମେଘ ଢଙ୍କା ସୂର୍ଯ୍ୟ ଯେପରି ଗୁଳୁଗୁଳିଆ କରନ୍ତ ।

ଚେତନା ଆସିଲେ ମଣିଷର ବସ୍ତୁର ଶକ୍ତି ଆସେ । ଏହି ବସ୍ତୁର ପୃଷ୍ଠଭୂମିରେ ସେ ବିଭିନ୍ନ ପରିବେଶର ଆଘାତ-ପ୍ରତିଘାତ ପ୍ରଘାତ ଦ୍ୱାରା କର୍ମର ଅଧିକାଂଶ ହୁଏ । ତେଣୁ କର୍ମର ଫଳ ପାଏ ।

ଯେଉଁ କାରଣ ହେଉଥାଉ, ଜାଣୁଥିଲେ ବା ଅଜାଣତରେ ଯେପରି ହେଉଥାଉ, ନିଆଁ ତାହାର ଫଳ ଦେବ । ମୂଳରୁ ହତିଆର ହସ୍ତପୃ କ୍ଷତ କରିବ ।

ଏଇ କାରଣରୁ ମଣିଷ ଲେଙ୍ଗଡ଼ା, କୁଜା, ଅନ୍ଧ, କାଲି, କୁଷ୍ଠରୋଗୀ ଓ ରଣ୍ଡି ବେମାରରେ ପଡ଼େ ।

ଏଇଠି ହେଲା ଧର୍ମମତରୁ ପୁରସ୍କାର-ଦଣ୍ଡର ଉଦାହରଣ ।

ହିନ୍ଦୁମତ କହେ—ବିକଳାଙ୍ଗ ସଂପତ୍ତିରେ ଭାଗ ପାଇବ ନାହିଁ । କେତେକ ଧର୍ମକାର୍ଯ୍ୟ କରିବାରେ ଡାକ୍ତର ହେବ ନାହିଁ ଠିକ୍ ସୈନ୍ୟ ବା ସିଗନାଲ ବ୍ୟକ୍ତି ବା ଟ୍ରକଡ୍ରାଇଭର ପାଇଁ ବାରଣ ଥିଲା ପରି ସଂସାର କେବଳ ନିଖୁଣ ଲୋକଙ୍କ ପାଇଁ । ନିଖୁଣ ନ ହେଲେ ହିନ୍ଦୁ ତାନ୍ତ୍ରିକ ବଳୀ ମଧ୍ୟ ହୋଇ ନ ଥିଲେ ।

ଜୈନ ମତ ଏହି (ହିନ୍ଦୁମତର) ପ୍ରଚଳିତ ଦୃଷ୍ଟିଭଙ୍ଗୀକୁ ସମର୍ଥନ କରିଥିଲା ।

କିନ୍ତୁ ହିନ୍ଦୁମତର ଦାରିଦ୍ର୍ୟ ପାପ ସମ୍ଭୂତ ବୋଲି ହୋଇଥିବା ଯୁକ୍ତିକୁ ଅସ୍ୱୀକାର କରି ଦାରିଦ୍ର୍ୟର ଉତ୍କର୍ଷତା ଜୈନ ଓ ବୌଦ୍ଧ ଉଭୟେ ପ୍ରଚାର କରିଥିଲେ ।

ହେଲେ ହିନ୍ଦୁମତରେ ଶିଷ୍ଟ ଖାଖାପାଖି ଋଷି ବା ସାଧକଙ୍କର ନିକଟ ପାହାଚ । ଶିଷ୍ଟର ଶାସ୍ତ୍ରଜ୍ଞାନ ଥିବ କିନ୍ତୁ ଦରିଦ୍ରନରୁ ଅଧିକ ଖାଦ୍ୟ ନ ଥିବ ।

ଜୈନ ଓ ବୌଦ୍ଧ-ଉଭୟ ମତ ପ୍ରଚାର କଲେ ଯେ ଭିକ୍ଷାପାତ୍ରରେ ନିଜର ଦରକାର ମୁତାବକ ଅଣାଯିବ । ସେତିକ ଶେଷ କରି ବା ନ କରି ପାତ୍ରକୁ ଶୂନ୍ୟ କରି ଧୋଇଧାଇ ରଖିଦେବ । ସଞ୍ଚୟ ନାହିଁ । ହିନ୍ଦୁ ଶିଷ୍ଟର ଦରିଦ୍ରନର ସଞ୍ଚୟ ମଧ୍ୟ ଦୋଷ ।

ଚତୁର୍ଥ ମତ ହେଲା—ବନ୍ଧା ଏହାର ଅର୍ଥ ବନ୍ଧନ । ବନ୍ଧ ଶବ୍ଦରୁ ବନ୍ଧର ଉତ୍ପତ୍ତି । ହିନ୍ଦୁ ମତରେ ମଣିଷ ମରଣଯାଏ ବନ୍ଧ ଥିବ । ଜୈନ ମତ ହେଲା ମଣିଷ ନିଜର ଚେଷ୍ଟାରେ ବାନ୍ଧି ହୁଏ । ରେଶମ ପୋକ ବା ସମ୍ବାଳୁଆ ବାନ୍ଧି ହେଲାପରି । ତେଣୁ ଆଦର୍ଶ ହେଲା—ସବୁ ଅଡୁଆଠାରୁ ଦୂରକୁ ଯିବା ।

କାହୁଅଙ୍କୁ ପିବ ନାହିଁ କ ଗୋଡ଼ ଧୋଇବ ନାହିଁ ।

ପଞ୍ଚମ ମୂଳମନ୍ତ୍ର ହେଲା—ସମ୍ବାର ବା ନିୟନ୍ତ୍ରଣ ।

ହିନ୍ଦୁ ମତ ହେଲା ଈଶ୍ୱରଙ୍କୁ ଫଳାଫଳ ସମର୍ପଣ କରି ଦେଇ କର୍ମ କରଯାଅ । କର୍ମରେ ପାପ ନାହିଁ । କର୍ମ ନ କରିବା ହେଉଛି ପାପ ।

ଜୈନ ମତ ଥିଲା ନିୟନ୍ତ୍ରଣ ବା ଲଗାମ୍ ।

ବୌଦ୍ଧମତରେ ଏଇ ନିୟନ୍ତ୍ରଣକୁ ଶୃଙ୍ଖଳିତ କରିଦେଲେ । ସେମାନେ ଏହା ଉପରେ ଗୁରୁତ୍ୱ ଦେଇ ସମ୍ବାର ବା ନିୟନ୍ତ୍ରଣକୁ ପାଞ୍ଚଟି ସ୍ତରରେ ରଖିଲେ ।

ପାତିମୂଖ (ସମ୍ବାର)—ପାପ ପୁଣ୍ୟର ଫର୍ମୁଲା । ସମସ୍ତେ ମାନିବାକୁ ବାଧ୍ୟ । ସେଇଠୁ ହେଲା—ସଚ୍ଚି ସମ୍ବାର । ମନଯୋଗର ନିୟନ୍ତ୍ରଣ କରିବାକୁ ହେବ । ଅନ୍ତରିକ୍ତ ଆଚ୍ଛନ୍ନ ହୋଇ ପଡ଼ିବ ନାହିଁ । ...ସେଇଠୁ ହେଲା ନାନା ସମ୍ବାର ବା ଜ୍ଞାନର ନିୟନ୍ତ୍ରଣ । ବୃଥାଏ ଜ୍ଞାନ ଖୋଜିବ ନାହିଁ । ଦରକାର ମୁତାବକ ଜ୍ଞାନ ସଂଗ୍ରହ କରିବ ।

ତାପରେ ଷାନ୍ତି ସମ୍ବାର ବା ସହିବାର ନିୟନ୍ତ୍ରଣ । ଏତକ ଜୈନ ମତ ବିରୁଦ୍ଧରେ । ଜୈନ ମତ ହେଲା ଖାଲି ସହିବ-ସହୁଥିବ ବୌଦ୍ଧ ମତ ଏହାର ବିରୁଦ୍ଧରେ ଗଲା (କାରଣ ବୌଦ୍ଧ ମତ ହେଉଛି ମଧ୍ୟପନ୍ଥା ...ଶେଷରେ ହେଲା ବୀର୍ଯ୍ୟ-ସମ୍ବାର । ଇଏ ହେଉଛି ସଂଯମ । ମାରଧର କରିବା, ଗାଲିଗୁଲଜ କରିବା, ଇନ୍ଦ୍ରିୟମାନଙ୍କର ଅପବ୍ୟବହାର କରିବାର ନିୟନ୍ତ୍ରଣ ।

ଆଧୁନିକ ଯୁଗରେ ଧର୍ମକୁ କୁହାଗଲା ସଦାଚାର-ସୁଶୀଳ-ସତ୍ ମଣିଷ । ମଣିଷ ମଣିଷର ବାଟରେ ରହିବ । ନିୟମ ମାନି ଇନ୍ଦ୍ରିୟ ସେବା

କରିବ । ବ୍ରହ୍ମଚର୍ଯ୍ୟ ପାଳିବ । କିନ୍ତୁ ବ୍ରହ୍ମଚର୍ଯ୍ୟ କେବଳ ପ୍ରତିଜ୍ଞାରେ ସୃଷ୍ଟି ବିଶ୍ୱାସର ଉପରକୁ ଯାଇ ପାରେ ନାହିଁ ।

ପଣ୍ଡିତ ସୁ ରୁଷ (ପୀଡ଼) ଙ୍କର ଲେଖା ପଢ଼ି ଥିଲି—ବ୍ରହ୍ମଚର୍ଯ୍ୟ ହାନିହେଲା ତ ନରକକୁ ଗଲା । ...ନାରୀ ନରକର ଦ୍ୱାର । ...ନାରୀକୁ ଛୁଇଁବ ନାହିଁ...ନାରୀର ଛୁଆଁ ଜିନିଷକୁ ମଧ୍ୟ ଛୁଇଁବ ନାହିଁ...ନାରୀର ମୁହଁ ଆଡ଼େ ଆଖି ନ ପକାଇ ପାଦର ନଖକୁ ଦେଖିବ ।......

ଜୈନ ମତର ଷଷ୍ଠ ମୂଳମନ୍ତ୍ର ହେଲା ନିର୍ଜରା—ନିଜକୁ ତିଳ ତିଳ କରି ଶେଷ କରିଦିଅ । ଚାର୍ବାକ୍ ମତ (ଏଇ ମଧ୍ୟ ନାସ୍ତିକ ମତ) —ଏ ସଂସାର ଥିବ ଯେତେଦିନ, ଭୋଗ ଆନନ୍ଦ କରୁଥିବ ମନ ।

ଶେଷ ବା ସପ୍ତମ ଜୈନ ମୂଳମନ୍ତ୍ର ହେଲା—ମୋକ୍ଷ ବା ମୁକ୍ତି । ଏହା ସହିତ ଯୋଗ ହୋଇଛି ପାପ ଓ ପୁଣ୍ୟର ବିଭିନ୍ନ ପରଖ । ଆଉ ଧର୍ମ ଅଧର୍ମର ବିଶେଷ ବ୍ୟାଖ୍ୟା ।

ଏଇ ମୂଳନୀତିର ସମୀକ୍ଷାରୁ ବୁଝିହୁଏ ଯେ ଜୈନମତ ସାର୍ବଜନୀନ ହେବା ଦୁରୂହ । ଏହାର ଭଲ ଭଲ ଅଂଶକୁ କାମରେ ଲଗାଇ ଧର୍ମ ଅର୍ଜନ କରିଯିବାର ଚେଷ୍ଟା କରାଯାଏ ।

ସକାଳେ ପଡ଼ିଆରେ ବୁଲି ପିମ୍ପୁଡ଼ି ମଦାରେ ଅଟା ବା ଚିନି ଦେବା । ଏହାକୁ କର୍ମଠ-ଯାଗ କୁହାଯାଏ । .. ଉଡ଼ନ୍ତା ପକ୍ଷୀଙ୍କ ପାଇଁ ସୋରିଷ ବୁଣିବା...ସକାଳର କାଉଙ୍କର ମେଳା ପାଇଁ ଖୁଦ, ଚାଉଳ ଇତ୍ୟାଦି ପକାଇବା...ପୋଖରୀର ମାଛଙ୍କୁ ଖଇ ଖୁଆଇବା ...ଗାଈ ଓ ଷଣ୍ଢଙ୍କୁ ରୁଟି ଦବା...କୁକୁରଙ୍କୁ ଜଳଖିଆ ଦୋକାନୀ ପିଆଜ ପକୁଡ଼ି ଦବା...ଇତ୍ୟାଦି ।

ଏଥିରେ ଭଲ ବିଷୟ ହେଲା କଥା କହିବାରୁ ନ ଥିବା ଜୀବଜନ୍ତୁଙ୍କର କଥା ଭାବିବା ।

କିନ୍ତୁ ଏଇ ପୋଷାକୀ ନାମ କରିବାର ସୁଝକରେ ଚୋରି, ଜେଲରେ ଅଟକା ଇତ୍ୟାଦି ମିଶାଇ ଶୁଦ୍ଧ ଜିନିଷକୁ ଭେଜାଲ କରି ପଇସା ଅର୍ଜିବା । ଠକେଇବାର ବଳିଷ୍ଠ ପ୍ରଣାଳୀ ଧର୍ମ ଉପରେ ସ୍ଥାପନ କରି ନିଜକୁ ସାଧୁ ବା ମହତ ଲୋକ ବୋଲାଇବା ।

ଜୈନ ସିଦ୍ଧାନ୍ତ (ହିନ୍ଦୁଙ୍କର ବେଦ ଓ ଇସଲାମ କୋରାନ ପରି) ବାରଟି ଭାଗରେ ବିଭକ୍ତ। ଦ୍ୱାଦଶ ଭାଗ ପୂର୍ବ୍ବସ୍ ଏବେ ଲୁପ୍ତ । ଆଉ ଏଗାରଟି ହେଲା—(୧) ଆଚାରାଙ୍ଗ ସୂତ୍ରମ (୨) ସୂତ୍ରକୃତାଙ୍ଗ ଅଙ୍ଗମ୍ (୩) ଥାନା ଅଙ୍ଗମ୍ (୪) ସମବାୟ ଅଙ୍ଗମ୍ (୫) ନ୍ୟାୟ ଧର୍ମ କଥା ଓ (୬) ଉପାସକ ଦଶାସାଓ (୭) ଅନ୍ତଗଦାଦା ସାଓ (୮) ଅନୁତ୍ତରୋପପାତିକ ଦଶାସାଓ (୯) ଭଗବତି (ଭିଆପନାତି) (୧୦) ପନ୍ହା ବାଗାର ନୈମ (୧୧) ବିପାକ ସୂତ୍ରମ୍ ।

ଏହି ପୁସ୍ତକମାନ ଯିଏ ଦେଖିବାର ସୌଭାଗ୍ୟର ଅଧିକାରୀ ହେବେ, ହୁଏତ ବୁଝିବେ ଯେ ଏଇ ଗ୍ରନ୍ଥମାନ କେତେକ ସାଧକଙ୍କର ନିଜସ୍ୱ ମତ । ଏଇ ଧର୍ମଶାସ୍ତ୍ର ସହିତ ଇଶ୍ୱର ବା ଧର୍ମ ବା ମହତ୍ ଆତ୍ମାର ସମ୍ପର୍କ ହେଉଛି ଆଦର୍ଶ ।

ସମାଜର ଅଗ୍ରଗତିର ଭାବ-ଅଭାବ, ଓ ପ୍ରୟୋଜନୀୟତାର ସମାଧାନ ନ ଥିବାରୁ ଜୈନମତ ପାଖେଇ ଯାଉଛି । ତେଣୁ ସାଧକଙ୍କର ପରଂପରା ଏଥିରେ ନାହିଁ ।

ଜୈନ ମତରେ ଚବିଶିଜଣ ତୀର୍ଥଙ୍କର ଥିଲେ । ଜୈନ ଶବ୍ଦର ଗୋଟିଏ ଅର୍ଥ ହେଉଛି ତୀର୍ଥଙ୍କର ।

ଏମାନେ ବୌଦ୍ଧ ସଙ୍ଘର ଅନୁରୂପ । ବେଦକୁ ମାନନ୍ତି ନାହିଁ । ବ୍ୟକ୍ତିଗତ ଈଶ୍ୱରଙ୍କ (Supreme god) ମାନନ୍ତି ନାହିଁ । ସେମାନେ କହନ୍ତି ଯେ ଇନ୍ଦ୍ରିୟ ସାହାଯ୍ୟରେ ଯେତେ ଜଡ଼ବସ୍ତୁର (MATTER) ତାଲିକା କରାଯାଏ ସବୁ ଚିରନ୍ତନ [ମନ ଗୋଟିଏ ଇନ୍ଦ୍ରିୟ ଏହି ବିଶ୍ୱବ୍ରହ୍ମାଣ୍ଡର ବାରମ୍ବାର ପର୍ଯ୍ୟାୟ କ୍ରମେ ପ୍ରକାଶ ହେଉଛି । ଗୀତାର ଶିକ୍ଷା ସେଇଆ ; ମଣିଷର ମନ (ମାନସ) ଅମର । ପଶୁଙ୍କର ମନ ମଧ୍ୟ ଅମର । ......ତେଣୁ ଜୈନମାନଙ୍କୁ MYSTICAL SECT କୁହାଯାଏ ।

ଉନ୍ନତ ହେଲେ ସାଧକ ନିଜର ଚେଷ୍ଟାରେ ଶେଷ ନିଶ୍ୱାସ ଆଡ଼କୁ ଯାଏ । [ଅନେକ ଲୋକ ଭଲ ନ ହୋଇ ପାରିଲେ ଖାଦ୍ୟ, ପାନୀୟ ଓ ଔଷଧ ବନ୍ଦ କରି ଦେଇ ମୃତ୍ୟୁର ନିକଟକୁ ଯାଇଥାନ୍ତି । ......ସନ୍ଥ ବିନୋବା ଭାବେଙ୍କର ଶେଷ ଦଶ ପନ୍ଦର ଦିନ··· ସାଧକର ସାଧନା ହେଉଛି ଜୀବନ-ଘଡ଼କୁ ଲିଭାଇବାରେ ସାଧନା··· ଶେଷ ହେଉଛି ନିର୍ବାଣ ।

ହିନ୍ଦୁ ମତରେ ଗୋଟିଏ ଶବ୍ଦ ଅଛି—ଅଭିଜ୍ଞ । ଏଥିରେ ସାଧକ ପାଞ୍ଚଟି ଶକ୍ତି ପାଇଥାନ୍ତି । ......ଇଚ୍ଛା ଅନୁସାରେ ବଡ଼ ସାନ ହୋଇ ପାରନ୍ତି (ଶ୍ରୀ ହନୁମାନଙ୍କର ଲଙ୍କା ଯୁଦ୍ଧ ଓ ପବନ-ଦୂତ ଭୀମଙ୍କର ପୁଅ ଘଟୋତ୍କଚ ମାୟାବଳେ ବ୍ୟୁହରେ ଦୁଇ ଲକ୍ଷ ସୈନ୍ୟଙ୍କର ପ୍ରାଣହାନି)—ଦୂରରୁ ଅନ୍ୟର କଥା ଶୁଣିବା—ଦୂରରୁ ଅନ୍ୟ ସ୍ଥାନ ଦେଖିବା (ଆମ ଭିତରେ କେତେକ ସାଧାରଣ ବୃଦ୍ଧଙ୍କର ଏହି ଶକ୍ତି ଅଛି)—ଅନ୍ୟର ମନର ଭାବ ଜାଣିବା (ପଶୁପକ୍ଷୀ ସାଧକମାନଙ୍କର ଏହି ଶକ୍ତି ରହିଛି)—ଅନ୍ୟର ଅତୀତ ଓ ବର୍ତ୍ତମାନର ଅବସ୍ଥା (ଅନେକ ସାଧାରଣ ଲୋକଙ୍କର ଏହି ଶକ୍ତି ଅଛି) ।

ଜୈନ ଓ ବୌଦ୍ଧମାନେ ଏହାକୁ ଗ୍ରହଣ କଲେ ନାହିଁ । ସେମାନେ କହନ୍ତି—ଇଏ ହେଉଛି ଅସାଧାରଣ ସିଦ୍ଧି । ସେମାନେ ଅଭିଜ୍ଞ ପାଇଁ ଗୋଟିଏ ଶବ୍ଦ ଚଳାଇଲେ—ମହାତ୍ମା ବା ମହାନ୍ ଆତ୍ମା । ହିନ୍ଦୁ ମତରେ ମହାନ୍ ଆତ୍ମା ନାହିଁ । ପ୍ରଚଳିତ ବ୍ୟବସ୍ଥାରେ ମହାତ୍ମା ଯୋଗ କରି ହୋଇ ଅନେକ କର୍ମଚାରି ଓ ଦାନଦାରଙ୍କୁ କୁହା ଯାଉଛି ।

ଏହିପରି ଭାବରେ ଧର୍ମର ଆରମ୍ଭ ହୁଏ ।

ଧର୍ମମତ (ନାସ୍ତିକରେ ଈଶ୍ୱରଙ୍କର ଆଶୀର୍ବାଦ ନେଇ) ଜଣକଠାରୁ ଆରମ୍ଭ ହୁଏ । ଠିକ୍ ଗୋଟିଏ ନଈ ପରି । ପ୍ରଥମେ ଥାଏ ଗୋଟିଏ କ୍ଷୁଦ୍ର ଗଡ଼ିଆର ପାଣିର ଧାରା । ସେଇ ଧାରା ଭୂମିର ଢାଲୁକୁ ଓର କରି ବୋହିଯାଏ । ହୁଏତ ଇଂଲଣ୍ଡର ଥେମସ୍ ନଈ ପରି ଦୁଇ ତିନ ଶହ ମାଇଲ ଅବା ଆଫ୍ରିକାର ନାଇଲ ନଈ ପରି ଚାରି ହଜାର ମାଇଲ । ......ଧର୍ମମତ ମଧ୍ୟ ସେମିତି ଆରମ୍ଭ ହୋଇ ତାହାର କାର୍ଯ୍ୟ ଶେଷ କରି ଚାଲିଯାଏ ।

ଯେଉଁ ଅଞ୍ଚଳରେ ଗୋଟିଏ ଧର୍ମମତ ବା ସାଧକ ଦେଖା ଦିଅନ୍ତି । ସେଇ ଅଞ୍ଚଳରେ ଏକାଧିକ ସାଧକ ଦେଖା ଦିଅନ୍ତି । ଏକାଧିକ ସାମାନ୍ୟ ପରିବର୍ତ୍ତିତ (MODIFIED) ଧର୍ମମତ ଆରମ୍ଭ ହୁଏ । ଘୋର ଜଙ୍ଗଲରେ ବା ନିପଟ ମଫସଲରେ ଏସବୁ ହୁଏ ନାହିଁ । ସମକାଳୀନ ବଡ଼ କେନ୍ଦ୍ରରେ (ବିଦ୍ୟା ବା ଧନ ବା ବାଣିଜ୍ୟ ବା ଦୁର୍ନୀତି) ଏମାନଙ୍କର ଜନ୍ମ ।

ସେଇ ଧର୍ମମତ (ନିମ୍ନ ବା ଉଚ୍ଚ ବା ମଧ୍ୟ ପ୍ରାଥମିକ ବିଦ୍ୟାଳୟ ପରି) ତାହାର ଶିକ୍ଷା ଦେଇ ସାରିବା ପରେ ସେମିତି ପାଠଶାଳା ହୋଇ ରହିଥାଏ । ଇତିହାସ କହେ ଯେ ଧର୍ମମତରୁ

ଆଜ ଗ୍ରାହକତା ନାହିଁ । ତେଣୁ ଯିଏ ଥିଲେ ତାଙ୍କର ପରିବାରରେ ସେଇଟି ରହିଥାଏ ।

ଏବେ ଜୈନ ମଧ୍ୟ ଅଛନ୍ତି । ସେମାନେ ନିରାମିଷାଶୀ । [ସବୁବେଳେ ଭାରତବର୍ଷରେ ନିରାମିଷ ଖାଦ୍ୟ ଧନ ସୃଷ୍ଟି କରେ । କାହିଁକି ଓ କପଟ କରେ ବୁଝାଯାଏ ନାହିଁ । ଗରିବ ଜୈନ ପ୍ରାୟ ଶଇଳ ।]

ତାଙ୍କର ଅନେକ ଭଲ କଥା ରହିଛି । ଗୋଟିଏ ଆବେଗ ବା ପ୍ରବଳ ଇଚ୍ଛା । (PASSION)କୁ ଦମନ କଲେ ସବୁ ପ୍ରକାର ବାସନାକୁ ନିୟନ୍ତ୍ରଣ କରିହେବ । ଅନେକ ବାସନା ନିୟନ୍ତ୍ରଣ କରିବାକୁ ଚାହିଁଲେ କେବଳ ଗୋଟିଏ ବାସନା ନିୟନ୍ତ୍ରଣ ହେବ ।

ସବୁଠାରେ ଏହି ମତ ।

କ୍ରୀଡ଼ା ଜଗତରେ ଶହେ ମିଟର ଦୌଡ଼ ବା ହାଇଜମ୍ପ ବା ଲଙ୍ଗଜମ୍ପରେ ସୁନା ମେଡ଼ାଲ ମିଳେ । ସେମିତି ଛବିଶ ମାଇଲ (ମାରଥନ ଦୌଡ଼) ବା ଷ୍ଟିପଲ୍ ଚେଜ (ବାଧା ବିଘ୍ନ ଦୌଡ଼) ବା ପେଣ୍ଟାଥେଲନ୍ (ପାଞ୍ଚଟି ବିଷୟ) ବା ଡେକାଥେଲନ୍ (ଦଶଟି ବିଷୟ) ପ୍ରଥମ ହେଲେ ସେଇ ସୁନା ମେଡ଼ାଲ୍ ଗୋଟିଏ । ପ୍ରଶଂସାର ଆକାର ମଧ୍ୟ ସମାନ ।

ଏହାକୁ ଓଡ଼ିଆରେ କୁହାଯାଏ—ଘୋଡ଼ା ଦଉଡ଼ ଦଉଡ଼ ଯେଉଁଠି, ହାତୀ ଗୁଳା ଗୁଳା ସେଇଠି ।

ଜୈନ ମତ ହେଲା ନିଜର ଇଚ୍ଛାରେ ବା ଜ୍ଞାନରେ କର୍ମଠାରୁ ଦୂରେଇ ଯିବା ସଂସାରରେ ବାନ୍ଧି ହୋଇ ରହିବା ପାଇଁ କର୍ମ ହେଉଛି ଶୃଙ୍ଖଳ ।

କର୍ମରେ ବାନ୍ଧ ହୁଅ ନାହିଁ । ପାଞ୍ଚଟି ପ୍ରତିଜ୍ଞା ବା ବ୍ରତ ପାଳନ କରିବ ।

ପ୍ରଥମ ବ୍ରତ—ମୁଁ ପ୍ରାଣୀ ହତ୍ୟା କରିବ ନାହିଁ କିମ୍ବା ପ୍ରାଣୀ ହତ୍ୟାର କୌଣସି ପରବର୍ତ୍ତୀ ପର୍ଯ୍ୟାୟରେ ସାମିଲ ହେବ ନାହିଁ ।

ପଶ୍ଚାତ, ରକ୍ତମାଂସ ଆଦି ମୋର ଜଗତରେ ବା ଯୋଗ ବୈରାଗ ବା ଅସ୍ପଷ୍ଟ ରୂପେ ବ୍ୟବହାର କରିବ ନାହିଁ ।

ହିନ୍ଦୁ ସନ୍ନ୍ୟାସୀ ଓ ବୌଦ୍ଧ ଭିକ୍ଷୁ ଦଣ୍ଡ ଧରିପାରେ ଜୈନ ଦଣ୍ଡ ଧରିବ ନାହିଁ ।

ଯିଏ ଚଳୁଛି ସେ ବଞ୍ଚୁଛି । ଯିଏ ଚଳଚଳ ହେଉ ନାହିଁ, ତାହାର ମଧ୍ୟ ପ୍ରାଣ ଥାଇପାରେ ତେଣୁ ବୁଦ୍ଧି ବିଚକ୍ଷଣ ଚଳୁଥିବ ।

ଦେହ-ମନ-ବାକ୍ୟ, ପ୍ରତ୍ୟେକ ରୂପରେ ମୁଁ ଅହିଂସ ରହିବି ।

ଚାଲିବାବେଳେ ସାବଧାନ ହୋଇ ପାଦ ପକାଇବ । ......କହିଲାବେଳେ ସାବଧାନ ରହିବ, ଯେମିତି ଅପରର କ୍ଷତିକାରକ ବାକ୍ୟ ନ ଆସିବ । କଳି ତକରାର, ମିଛ—ଚୁଗୁଲି, ଅନ୍ୟର ଦୋଷ ଦୁର୍ବଳତା କଥା ଗାଇବ ନାହିଁ । ......କଥା କହିଲା ବେଳେ ସାବଧାନ ରହିବ । ଯେମିତି ମୋର ଭିକ୍ଷାପାତ୍ରକୁ ତଳେ ଥୋଇଲା ବେଳେ ସାବଧାନ ହୋଇ ରଖିବ। କାରଣ ଏହାର ଚାପରେ କେତେକ ପୋକ ପିମ୍ପୁଡ଼ି ମରିପାରନ୍ତି ।

ନିଜେ ଖାଇବା ବେଳେ ଖାଦ୍ୟକୁ ସାବଧାନ ହୋଇ ଦେଖି ଖାଇବ । [ପଚାରି କଦଳୀ ଫେଣାଏ ଆଣିଲ । ସେଥିରେ ପୋକ-ପିମ୍ପୁଡ଼ି ଥାଇ ପାରନ୍ତି । ଖାଉ ଖାଉ ଜୀବହତ୍ୟା ହେବାର ଆଶଙ୍କା ଅଛି ।

ପାଣି ପିଇଲା ବେଳେ ଛାଣି କରି ପିଇବ । ସବୁବେଳେ ମୁହଁରେ ପଟି ବାନ୍ଧିଥିବ ।

ମୋଟ କଥା ହେଲା ନିଜର ସବୁ କାମର ପ୍ରଧାନ ଲକ୍ଷ୍ୟ— ଜୀବହତ୍ୟା ହେବ ନାହିଁ ।

ଏହି ମତକୁ ପାଳିଲେ ଧର୍ମ ହେବ । କିନ୍ତୁ କଳ କାରଖାନା କୋଠାବାଡ଼ି, ବା ସାଇକେଲ-ମଟର ବା କଠଉ-ଜୋତା ଇତ୍ୟାଦି ହବ ନାହିଁ । ବସିବା ଚଉକି ଟେବୁଲରୁ ଛାରପୋକ ବା ଖଟମଲ୍ ବାହାରି ଲୁଗାରେ ବସା ବାନ୍ଧିବେ । ୧୯୮୮ ରେ ଏହି ବ୍ରତ ପାଳନ କରିବାର ପରିବେଶ ନାହିଁ ।

ଅଦ୍ୟାବଧି ଜୈନ ଧର୍ମଶାଳାମାନଙ୍କରେ ଛାରପୋକଙ୍କର ହାଟ ବଜାର ରହିଛି । ସେମାନେ ଭାତ ଡ଼ାଲି ଖାଆନ୍ତି ନାହିଁ ; ମଣିଷ ରକ୍ତ ଖାଆନ୍ତି ।

ଲୋକ ଡ଼ାକି ଡ଼ାକି ଯାଏ—ଖଟମଲ୍ ଟିଲ୍ଏଗା ? ଛାରପୋକ ଖୁଆଇବ ?

ଅଧଘଣ୍ଟା ଓ ଘଣ୍ଟା ଅନୁସାରେ ମଜୁରି ଠିକ୍ କରି ଲୋକ ଯାଇ ଛାରପୋକ-ଭରା ଖଟ ବା ଖଟିଆରେ ଶୁଏ । ଛାରପୋକ ରକ୍ତ ପିଇଲେ ବି ସେ ହଲଚଲ ହୁଏ ନାହିଁ ।

ଦ୍ୱିତୀୟ ବ୍ରତ······ମିଛ କହିବ ନାହିଁ । ରାଗ ହେଲେ ବା ଲୋଭ ଲାଗିଲେ ବା ଭୟ ହେଲେ ବା ଥଟା-ଟାହିଲି-ଟାପରାରେ ମଧ୍ୟ ମିଛ କହିବ ନାହିଁ । ମୋ' ଆଗରେ ଅନ୍ୟ ଲୋକ ବି ସେମିତି କହିବେ ନାହିଁ ।

ମନରେ, କଥାରେ, ଠାରଠାରରେ ବି ମିଛ କହିବ ନାହିଁ ।

ଏଇ ଗଲା ଅହିଂସା ଓ ସତ୍ୟ ।

ଏହାର ଶ୍ରେଷ୍ଠ ଅଂଶ ହେଲା—ଆଗ ଭାବିବ, ତାପରେ କଥା କହିବ । ......ରାଗ, ଲୋଭ, ଭୟ, ବା ମଜଳ ମଜଲିସରେ କଥା ଭୁଲିବ ନାହିଁ । କାରଣ କଥା ମଧ୍ୟ ପାପ (SIN) ଓ ହିଂସା (INJURY) ସୃଷ୍ଟି କରି ପାରେ ।

ତେଣୁ କାୟ-ମନ-ବାକ୍ୟରେ ଅହିଂସା ଓ ସତ୍ୟ ନିଜର ବ୍ରତ ଭାବରେ କରି ହେବ ।

**ତୃତୀୟ ବ୍ରତ** ହେଲା—ହାତଉଠା କରିବ ନାହିଁ । ସାମାନ୍ୟ ଶ୍ରେଷ୍ଠ ଜିନିଷଟିଏ ବି ନୁହେଁ । ......ଘର, ଖଟିଆ, ଏ ବୁଝି ମାଗିବ । ସମସ୍ତଙ୍କୁ ମାଗିବ ନାହିଁ । ଯେତିକ ଦରକାର ସେତିକ ନେବ ।

ଖାଇଲା ବେଳେ ଅନୁମତି ନେଇ ଖାଇବ । [ମଠ ଓ ଦଳ ଓ ଜମିଜମା ନ ଥିବାର କଥା । ତାହାହେଲେ ଏଇ ଗୁରୁଜନ କିଏ ? ......ବୋଧହୁଏ ତୀର୍ଥଙ୍କର । ......ଆମେ ଯେମିତି ପାଟିକୁ ଭାତ ନେବା ଆଗରୁ ଥାଳ ପାଖରେ ବସି ଆଖିକୁ ବୁଜି ଭଗବାନଙ୍କୁ ସ୍ମରଣ କରି ଖାଉ ଅବା ସାଧୁ ପଙ୍ଗତରେ ଯେମିତି ଗୁରୁଦେବଙ୍କ ବା ପ୍ରତିଷ୍ଠାତା ବା ଈଶ୍ୱରଙ୍କର ନାମ ନିଆଯାଏ ।]

ଏଇ ବ୍ରତର କାରଣ ହେଲା—ଆମେ କୌଣସି ବିଷୟରେ ସବ୍ୟମୟ କରିବା ନେଇଁ ।

ସାଧକ ଯଦି କେଉଁଠ ରହୁଛନ୍ତି, ତେବେ ଯେତିକ ଦରକାର ସେତିକ ଥାନ ନେବ ଓ ସେଥିରେ ମୌରୁଷୀ ସତ୍ତ୍ୱ କାଢ଼ିବ ନାହିଁ ।

ଭେଳଣ୍ଡବାରେ ଆଗ ଚଢ଼ିଛି ବୋଲି ହାତ ଗୋଡ଼, ଗଢ ତକଆ ଦେଇ ମାଡ଼ ବସିବ ନାହିଁ ।

**ଚତୁର୍ଥ ବ୍ରତ** ହେଲ—ବ୍ରହ୍ମଚର୍ଯ୍ୟ । ଇନ୍ଦ୍ରିୟ-ପରାୟଣ ହୋଇ ଇନ୍ଦ୍ରିୟ-ସୁଖ ପାଇଁ ଦେବତା, ମଣିଷ ବା ପଶୁଙ୍କ ସହିତ କାମକ୍ରୀଡ଼ା କରିବ ନାହିଁ । ମୋ' ଆଗରେ ବା ମୋର ଜ୍ଞାନ ସାରରେ ଅନ୍ୟ କେହି ଏସବୁ କରିବେ ନାହିଁ ।

ଅଢ଼େଇ ହଜାର ବର୍ଷ ଆଗରେ ଭାରତ ବର୍ଷରେ ବ୍ରହ୍ମଚର୍ଯ୍ୟକୁ କେନ୍ଦ୍ର କରି ଦେବତା-ମଣିଷ-ପଶୁର ଭାଗ-ବିଭାଗ ଥିଲ । ଏଇ ଅଠାଅଣି ମସିହାରେ ମଧ୍ୟ ସେଇଆ ରହିଛି । ଆଜି ମଧ୍ୟ କେତେକ ନାରୀ ଅବିବାହିତା ରହି ଦେବତାଙ୍କୁ ପତି ରୂପେ ବରଣ କରି ପୂଜା ଅର୍ଚ୍ଚନା କରୁଛନ୍ତି ।

ପ୍ରବାଦ ଓ ଜନଶ୍ରୁତି ଅନୁସାରେ ଓଡ଼ିଶାରେ, ତାମିଲନାଡ଼ୁ କେରଳ ଓ କର୍ଣ୍ଣାଟକରେ ଦେବତା (ଠାକୁର) ମଣିଷଙ୍କୁ ନିଜର କରି ନେଇ ଥିବାର କଥା ରହିଛି । କେତେକ ପୁରୁଷ ମଧ୍ୟ ଦେବୀ (ଠାକୁରାଣୀଙ୍କୁ) ନିଜର ସ୍ତ୍ରୀ କରିବାର ଉଲ୍ଲେଖ ସିଦ୍ଧ-ସାଧକଙ୍କର ଗୀତମାନଙ୍କରେ ଲିପିବଦ୍ଧ ହୋଇ ରହିଛି ।

ଜୈନ ଯୁଗର ଆଜିର ଅଢ଼େଇ ହଜାର ବର୍ଷତଳେ ମହାଭାରତ ଯୁଦ୍ଧ ସମୟରେ ଦେବତାମାନେ ମଣିଷ (ନାରୀଙ୍କୁ) ସନ୍ତାନବତୀ କରିବାର ପ୍ରମାଣ ଅଛି । ଓଡ଼ିଆ ଉଷା ପର୍ବର କାହାଣୀରେ ମଧ୍ୟ ଦେବତା ଓ ମଣିଷଙ୍କର ପ୍ରୀତିର କାହାଣୀ ରହିଛି ।

ଗତ ପଚାଶ ବର୍ଷ ମଧ୍ୟରେ ଓଡ଼ିଶା ମୂଲକରେ ଏହି ପ୍ରକାରର ସମ୍ବନ୍ଧର ସମ୍ବାଦ ନାହିଁ । ଏହା ବଦଳରେ ବହୁତ

ସାଧକମାନଙ୍କୁ ନାରୀମାନେ ପଦ-ସେବା-ଯୋଗ୍ୟ ପୁରୁଷ ରୂପେ ଅଭିଳାଷ କରୁଥିବାର ଅସଂଖ୍ୟ ପ୍ରମାଣ ରହିଛି ।

ଜୈନ ମତରେ ପ୍ରଥମ ଅବସ୍ଥାର ଦିଗମ୍ବର ବା ନଙ୍ଗୁଳୀ ସାଧକମାନଙ୍କ ପ୍ରତି ସମକାଳୀନ ସମାଜର ନାରୀମାନଙ୍କର ଆକର୍ଷଣରୁ ବିଭିନ୍ନ ଉପସର୍ଗ ଦେଖା ଦେବାରୁ ଶ୍ୱେତାମ୍ବର ଜୈନ ସଂପ୍ରଦାୟ ସୃଷ୍ଟି ହେଲା ।

ତଥାପି ଏଇ ଅଠାଅଣି ମସିହାରେ ମଧ୍ୟ ନଙ୍ଗୁଳୀ ବାବାଜୀ ସଂପ୍ରଦାୟ ରହିଛି । ଏମାନଙ୍କୁ ଅବଧୂତ (ବା ଅଦଭୁତର ଅପଭ୍ରଂଶ) କୁହାଯାଏ । ନଙ୍ଗୁଳୀ ସାଧିକା ମଧ୍ୟ ଅଛନ୍ତି ।

ଏହାପରେ ଲୁଗାପିନ୍ଧାକୁ ଧର୍ମ ସଂପ୍ରଦାୟ ସମସ୍ତେ ଗ୍ରହଣ କରିନେଲେ । ବୌଦ୍ଧମାନଙ୍କର ଲୁଗାପିନ୍ଧା ବେଶ୍ କଡ଼ାକଡ଼ି । ଭିତରେ ଓ ବାହାରେ ଆଣ୍ଠୁ ଲୁଚ୍ଚ ପୋଷାକ ରହିଛି । ଶ୍ୱେତାମ୍ବର ବା ଶୁକ୍ଳାମ୍ବର ଜୈନମାନେ ମଧ୍ୟ ଏହାକୁ ଗ୍ରହଣ କରିନେଲେ । ମୋଟାମୋଟି ସବୁ ଧର୍ମରେ ଭିନ୍ନ ଦେହ-ଢଙ୍କା ଅଙ୍ଗ-ବସ୍ତ୍ର ବା ଆଲଖୋଲା (ଆଃପ୍ରନ୍) ସମସ୍ତଙ୍କର ହୋଇଯାଇଛି ।

କିନ୍ତୁ ମନିଷ ଅଦ୍ଭୁତ ମଣିଷର ସମ୍ବନ୍ଧ—ବ୍ୟଭିଚାରର ପ୍ରଧାନ ଉପାଦାନ ହୋଇ ରହିଛି । ଇଏ ଥିଲା ବେଦ ଯୁଗରେ— ଭୂମି-ହରଣ, ନାରୀ-ହରଣ, ପଶୁ-ହରଣ, ପକ୍ଷୀ-ହରଣକୁ ପାତକ କୁହା ଯାଉଥିଲା । ଏଥିରେ ସମ-ଲିଙ୍ଗୀ ଓ ବିଷମ-ଲିଙ୍ଗୀ ଯୌନକ୍ରିୟା ନିର୍ବିଚାରରେ ସମାଜରେ ଦେଖା ଯାଉଥିଲା ।

ଏହାର ପ୍ରତିକାର ସ୍ଥିର କରିବା ଦୁଃସାଧ୍ୟ ; କିନ୍ତୁ ଶାସ୍ତ୍ରରେ ବାରଣ କରାଯାଉଥିଲା । ଜୈନ ମତରେ ଚତୁର୍ଥ ବ୍ରତ (ବ୍ରହ୍ମଚର୍ଯ୍ୟ) ଥିଲା

—ଏହି ବ୍ରହ୍ମଚର୍ଯ୍ୟ ଉପରେ । ଅହିଂସା, ସତ୍ୟ ଓ ଭିକ୍ଷାବ୍ରତ ପରେ ବଢ଼ାଗଲା ।

ସାଧକ ସ୍ତ୍ରୀମାନଙ୍କର କଥା ଅପ୍ରାସଙ୍ଗିକ ଭାବରେ କହିବ ନାହିଁ । ସେମାନଙ୍କର ରୂପକୁ ମନରେ ଦେଖିବ ନାହିଁ ।

ଏପରିକି ସାଧକ ଜୀବନକୁ ଆସିବା ଆଗରୁ ନାରୀ-ସଂସର୍ଗ ବା ନାରୀ-ସମ୍ଭୋଗର ସ୍ମୃତି ମନକୁ ମୋଟେ ଆଣିବ ନାହିଁ ।

ସେ ମସଲା-ଦିଆ, ଜଠର-ଅଗ୍ନି-ଉଦ୍ଦୀପକ ଖାଦ୍ୟ ଖାଇବ ନାହିଁ । ଖାଦ୍ୟ ପରିମିତ ଓ ମଦ ମଧ୍ୟ ପରିମିତ ।

ସେହି ଅତୀତରେ ମଦ ଖାଇବା ମଧ୍ୟ ଅତି ସାଧାରଣ କଥା ଥିଲା । ପାନୀୟ କହିଲେ ଆମେ ପାଣି ବୁଝୁଛୁ । କିନ୍ତୁ ପାନୀୟ ଅର୍ଥ ମଦ—କାଗଜି ସରବତ୍ ନୁହେଁ ।

ସାଧକ ମଧ୍ୟ ସ୍ତ୍ରୀ, ପଶୁ ବା ନପୁଂସକ (ଯେଉଁମାନେ ବହୁରୂପୀ ନାଁରେ ପରିଚିତ) ଛୁଇଁଥିବା ବା ବ୍ୟବହାର କରିଥିବା ବିଛଣା ଇତ୍ୟାଦି ବ୍ୟବହାର କରିବ ନାହିଁ ।

ଏଇଠି ପ୍ରଶ୍ନ ଉଠେ ଯେ ଯେଉଁମାନେ ଶ୍ରେଷ୍ଠ ବଡ଼ ସହରରେ ଅତି ଅଳ୍ପ ସ୍ଥାନରେ ଅତ୍ୟନ୍ତ ଅଧିକ ଭାବରେ ଚଳୁଛନ୍ତି ସେପରି ଘରକୁ କ'ଣ ସାଧକ ଆସିବା ମନା ? ......ସାଧକ କଣ ଜଙ୍ଗଲେ ବାଘ ହୋଇ ପିଣ୍ଡାରେ ଚାଲେ ବସିବେ ?

ଅନୁଭବୀର ଅନୁଭବ କହେ ଯେ ବ୍ରହ୍ମଚର୍ଯ୍ୟକୁ ଭିତର ସଂଯମ ବୁଝେ ନ ବୁଝି ଏହି ପ୍ରେଲିଟା ମୋଲିଟା ବୁଝିଲେ ବ୍ରହ୍ମଚର୍ଯ୍ୟ ଗୋଟିଏ ଅଟଳ ମୂଢ଼ ଦୋଷ ପରି ହୋଇଯିବ । ହୋଇଛି ମଧ୍ୟ

**ପଞ୍ଚମ ବ୍ରତ** ହେଲା ଯେ କୌଣସି ବିଷୟ ପ୍ରତି ଅନୁରକ୍ତ ହେବ ନାହିଁ । ଗୁରୁଙ୍କର କଠଉ, କଉପୂନି, ଠାକୁରଙ୍କର ମୂର୍ତ୍ତି ବା ଚିତ୍ର, ପ୍ରିୟଜନଙ୍କର ଲୁଗା ପୋଷାକ ଅଳଙ୍କାର ବା ଶଠିପଣ ଛୋଟ ବଡ଼, ସାମାନ୍ୟ ବା ଅଧିକ, ଜୀବନ୍ତ ବା ପାଷାଣ—କାହା ପ୍ରତି ଆଟାଚମେଣ୍ଟ (ଅନୁରାଗ) ରଖିବ ନାହିଁ ।

ମଣିଷର ମନ ଥିବାଯାଏ ଅନୁରାଗ ରହିବାକୁ ବାଧ୍ୟ । ଧର୍ମମତ କହୁପାରେ—ସୁନ୍ଦର ଫୁଲକୁ ଘୃଣା କର । ସୁଲଳିତ ସଙ୍ଗୀତକୁ ଶୁଣ ନାହିଁ । ସୁଖାଦ୍ୟକୁ ଦୂରରେ ରଖ । ······କିନ୍ତୁ ସୁନ୍ଦର ଅସୁନ୍ଦର ମଣିଷର ଇନ୍ଦ୍ରିୟ-ବୋଧର ପ୍ରଖରତା ଉପରେ ବସି ରହିଛି ।

ଏଇ ପ୍ରତିଜ୍ଞାର ଅର୍ଥ—ଭଲ ଓ ମନ୍ଦ ଉଭୟଙ୍କୁ ସମାନ ଭାବରେ ଦେଖ । ସୁନ୍ଦର ମୁହଁ ତଳେ କଙ୍କାଳ ଥିବାର ଜାଣ ଓ ଭାବ । ନିଜର ପ୍ରିୟଜନମାନେ ଅନାତ୍ମୀୟ ବୋଲି ମନେ କର—

ଛୁଇଁବେ ନାହିଁ ତଳେ ବୋଲିବେ ମଡ଼ା···ଘର ଘରଣୀ ଦେହ କଙ୍କାଳ ଥିବେ ···ଇତ୍ୟାଦି ।

ଯିଏ ଏଇ ପାଞ୍ଚଟି ବ୍ରତକୁ ନିଷ୍ଠାର ସହିତ ପାଳିପାରେ ସେଇ ହେଉଛି ତ୍ୟାଗୀ—ଗୃହତ୍ୟାଗୀ । ଅର୍ଥାତ୍ ପଦ୍ମ ପତ୍ରରେ ଜଳପର ହୋଇଥିବ । ଜଳ(ସଂସାରର ଦାଗ)ତୁମ ଦେହରେ ଲାଗିବ ନାହିଁ ।]

ଏଇ ଶିକ୍ଷା ହେଉଛି ହିନ୍ଦୁମତ ।

ମଣିଷ ବଣରେ ଗଛ ମୂଳରେ ବସି ମଧ୍ୟ ଗୃହୀ ହୋଇପାରେ ଓ ଘର ଭିତରେ ସୁଖାଦ୍ୟ ସୁଶୋଭନ, ସୁପାର୍ଶ···ଇତ୍ୟାଦି ଭିତରେ ସନ୍ନ୍ୟାସୀ (ବିରାଗୀ) ହୋଇପାରେ ।

ଏହାର ଅର୍ଥ ନୁହେଁ ଯେ ସମସ୍ତେ ଗାଡ଼ମଠର ହଂକେଇ ସାଧୁ ବୋଲେଇବେ । ବଣକୁ ଯିବା ଦରକାର । ବଣ-ପାହାଡ଼ରେ ରହିବା ଦରକାର । ଲୋକାଳୟକୁ ଆସି ନିଜର ଶିକ୍ଷା ଓ ଆତ୍ମମୁଖ୍ୟକୁ ପରଖ କରାଇ ନେଉଥିବା ଦରକାର ।

ଜୈନମତର ଶିକ୍ଷା ସମାଜ-ଜୀବନରେ ଶିଷ୍ଟାଚାର ଓ ଚଳଣି ଭାବରେ ମିଶିଯାଇଛି ।

(୧) ଅନ୍ୟର ଦୁଃଖ ଦେଖି ହସ ନାହିଁ ।

(୨) ଆଗ ଆସି ଥାଇଥାଗ, ପଛେ ଆସିବା ଲୋକଙ୍କୁ ନିଜର ସୁବିଧାରେ ଭାଗୀ କର ।

(୩) ଦୁଷ୍ଟଲୋକର ଦୁଷ୍ଟାମି ସହିବାକୁ ଶିଖ ।

(କ) ଦାନପ୍ରୀ ହୁଅ ।

(୪) ଘର ଓ ପରକୁ ସମାନ ଭାବ ।

(୫) ଶାଗ-ଭାତ ଓ ଘିଅ-ଭାତକୁ ସମାନ ଭାବ ।

(୬) ପିମ୍ପୁଡ଼ି ମାଛିଙ୍କୁ ବୃଥାରେ ମାର ନାହିଁ ।

(୭) ମଶା ବା ପିମ୍ପୁଡ଼ି କାମୁଡ଼ିଲେ ତାଙ୍କୁ ନେଇ ନିଆଁରେ ପକାଅ ନାହିଁ ।

(୮) ଷଣ୍ଢ ବା ମେଣ୍ଢା ବା କୁକୁଡ଼ା ଲଢ଼େଇ କରାଅ ନାହିଁ ।

(୯) ଅପ୍ରିୟ କଥା କହ ନାହିଁ ।

(୧୦ ଲୋକ ମେଳରେ ହାଇମାର ନାହିଁ । ଛିଙ୍କ ନାହିଁ, ବା ପାଡ଼ବ ନାହିଁ କିମ୍ବା ଆଙ୍ଗୁଠି ଫୁଟାଇବ ନାହିଁ କି ଭିଡ଼ମୋଡ଼ ହବ ନାହିଁ ।

(୧୧) ପାଣି ପିଇବ ଛାଣି ।

(୧୨) ଯେ ପାଞ୍ଚେ ପରର ମନ୍ଦ, ତା'ର ମନ୍ଦ ପାଖକୁ ଗୋବିନ୍ଦ ।

(୧୩) ଆହାରେ ଭଲମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ ।

(୧୪) କାହାରିଇ ଦେଖାଅ ନାହିଁ ଅର୍ଥାତ୍ ତୁମକୁ ଦେହ-ମନ-ବୁଦ୍ଧିର ଯେଉଁ ବିଶେଷ ଶକ୍ତି ମିଳିଛି, ତାହାର ଅପବ୍ୟବହାର କରି ସମସ୍ତଙ୍କୁ ହଇରାଣ ବା ହନ୍ତସନ୍ତ କର ନାହିଁ ।

(୧୫) ଅତିରିକ୍ତ ସ୍ତ୍ରୀ-ସୋହାଗ, ପୁଅ-ସୋହାଗ, ଝିଅ-ସୋହାଗ, ପଶୁପକ୍ଷୀ-ସୋହାଗ ଅଭ୍ୟାସ କର ନାହିଁ ।

(୧୬) ନିଜର କାମନାର ଖାଗ-ମାପ ରଖ ।

(୧୭) ନିଜର ଜ୍ଞାନ ବଢ଼ାଅ । ଅଳ୍ପ ଜାଣି ନିଜକୁ ଜ୍ଞାନୀ ଭାବ ନାହିଁ ।

(୧୮) ସବୁବେଳେ ମନେରଖ ଯେ ତୁମ ଉପରେ ଗୁରୁଜନ, ଗୁରୁ, ଖାଉନ୍ଦ ବା ଭଗବାନ ଅଛନ୍ତି ।

(୧୯) ଶରୀର ଆଗ, ଧର୍ମ୍ମ ପଛ । ନା, କାର୍ଯ୍ୟରେ ଓ କର୍ତ୍ତବ୍ୟ ପାଳନରେ ଶରୀର କିଛି ନୁହେଁ—ଏହାକୁ ଭଲକରି ବୁଝ ।

(୨୦) କାହାରି ଜିନିଷକୁ ଲୋଭ କର ନାହିଁ ।

(୨୧) ପୁରୁଣା କଥାକୁ ଘୋଷି ହୁଅ ନାହିଁ ।

(୨୨) ଯେତିକି ଦରକାର ସେତିକି ନିଅ, ଖାଲି ବଡ଼-ଆଖିଆ, ପେଟ-କାବୁରା, ବା ଦୋଷଦିଆ ହୁଅ ନାହିଁ ।

(୨୩) ଛିଦ୍ର ଖୋଜ ବୁଲନାହିଁ ।

(୨୪) ପ୍ରତ୍ୟେକ ପଦାର୍ଥର ମରଣ ବା ବିଲୋପ ଅଛି । ସମସ୍ତେ ମୃତ୍ୟୁର ଅଧୀନ ।

ମନେ ରହିବା ଉଚିତ୍ ଯେ ହିନ୍ଦୁ ମତରେ ଅହିଂସାକୁ ଯେଉଁ ଶ୍ରେଷ୍ଠ ସ୍ଥାନ ଦିଆଯାଇଥିଲା ସେଇ ଅହିଂସାର ବ୍ୟତିକ୍ରମ ହେବାରୁ ଅବ୍ରାହ୍ମଣମାନେ ଦୁଇଟି ଅହିଂସା-ଭିତ୍ତିକ ଧର୍ମମତ ପ୍ରଚାର କରିଥିଲେ । ଗୋଟିଏ ହେଲା ବୌଦ୍ଧ । ଆଉଟି ଜୈନ ।

ଉଭୟେ ଭାରତର ପୂର୍ବଭାଗରେ ପ୍ରଚାର ହୋଇଥିଲା । ବୌଦ୍ଧମତ ତାହାର ଜନ୍ମଭୂମିରେ ତିଷ୍ଠି ରହିଥିଲା । ଜୈନ ମତ ପଶ୍ଚିମ ଭାରତରେ ଆଦର ପାଇଥିଲା ।

ବୌଦ୍ଧଧର୍ମର ପ୍ରଚାର ଦକ୍ଷିଣ ଭାରତ ଉପରେ ଜୋର ଦେଇଥିଲା । ପଶ୍ଚିମ ଭାରତକୁ ଯଥେଷ୍ଟ ପ୍ରଚାରକ ଯାଇ ପାରି ନଥିଲେ ।

ତେଣୁ ଜୈନମତକୁ ବୁଝିବାକୁ ହୁଏ ଯେ ଭଲ ଲୋକଙ୍କର ଧର୍ମ । ଜ୍ଞାନୀର ଧର୍ମ ନୁହେଁ । ଅବ୍ରାହ୍ମଣ ସମାଜରେ ଜ୍ଞାନର ପରମ୍ପରା ନ ଥିଲା ।

ଜୈନ ସାଧକଙ୍କର ତିନୋଟି ଗୁପ୍ତି (୧) ମନୋଗୁପ୍ତି (୨) ବାକ୍-ଗୁପ୍ତି (୩) କାୟାଗୁପ୍ତି ।

ମନୋଗୁପ୍ତି ହେଲା ମନକୁ ଚଗଲା ନ କରି ଧ୍ୟାନ ଉପରେ ମନ ଦେବା । ବାକ୍-ଗୁପ୍ତି ହେଲା ବକବକ ନ ହୋଇ ମୌନ ରହିବା । କାୟା-ଗୁପ୍ତି ହେଲା ଦେହକୁ ଏକ ଅବସ୍ଥାରେ ରଖିବାର ଅଭ୍ୟାସ ବା କାୟା-ଉତ୍ସର୍ଗ ।—ସ୍ଥିର ଓ ଅଚଞ୍ଚଳ

ଜୈନମତ ବେଦର ଇନ୍ଦ୍ରିୟମାନଙ୍କ ଉପରେ ଜୋର ଦେଇଥାଏ । ହିନ୍ଦୁମତ ଜ୍ଞାନ ଉପରେ ପ୍ରତିଷ୍ଠିତ ହୋଇ ଥିବାରୁ ବୁଝାଏ ଯେ କର୍ମପ୍ରବଣତା ଓ କର୍ମପ୍ରଖରତା ହେଉଛି ତପସ୍ୟା । ଏହାର ଓଲଟା ହେଲା···ନିଷ୍କ୍ରିୟତା ହେଉଛି ତପସ୍ୟା ।

ଜୈନ ସାଧକଶ୍ରେଣୀ ଏହାର ସାଧନା କରିଥିଲେ । ସେହି ସାଧକ ଶ୍ରେଣୀରେ ପୁରୁଷ ଓ ସ୍ତ୍ରୀ ଉଭୟେ ସାମିଲ ହେଉଥିଲେ । ବୌଦ୍ଧମାନେ ମଧ୍ୟ ପୁରୁଷ ଓ ସ୍ତ୍ରୀ ଉଭୟଙ୍କୁ ଭିକ୍ଷୁଶ୍ରେଣୀରେ ନେଇଥିଲେ । କିନ୍ତୁ ହିନ୍ଦୁମତରେ ସ୍ତ୍ରୀମାନଙ୍କ ପାଇଁ ଏସବୁ ରଖାଯାଇ ନାହିଁ ।

ଆମେ ଯେଉଁମାନଙ୍କୁ ଯୋଗି-ଯୋଗିଆଣୀ ବା ବାବାଜୀ-ମାତାଜୀ ଇତ୍ୟାଦି ଭେକରେ ଦେଖୁ ସେଥିରେ ବ୍ରାହ୍ମଣ ନ ଥାନ୍ତି । ଓଡ଼ିଶାରେ ଜୈନଧର୍ମର ପ୍ରଚାର ହୋଇଥିଲା । ସମ୍ରାଟ୍ ଖାରବେଳ ଜୈନଥିଲେ ବୋଲି ପ୍ରମାଣ । ଇଏ ଦ୍ୱିତୀୟ ଶତାବ୍ଦୀର କଥା । ଜୈନଧର୍ମ ପ୍ରଚାରର ସାତଶହ ବର୍ଷର କଥା । ସାତଶହ ବର୍ଷ ଅର୍ଥ ଅଠେଇଶି ପୀଢ଼ି ।

ଓଡ଼ିଶାର ଲୋକେ ଜୈନଧର୍ମକୁ ଆଦର କରିପାରିଲେ ନାହିଁ । ବୈଦିକମାନ ଓ ନିଷ୍ଠାର ଅଭାବରୁ ସମାଜ ମଧ୍ୟ ଜୈନ ସାଧକଙ୍କର ଗ୍ରାହକତା କରିପାରିଲା ନାହିଁ ।

ଓଡ଼ିଶାରେ ହେଲା ଯୋଗୀ ସମ୍ପ୍ରଦାୟ । ଏମାନେ ହିନ୍ଦୁ ସମାଜର ଅଙ୍ଗ ହୋଇ ରହିଲେ ।

ପୁଣି ବେଦାନ୍ତର ଧର୍ମସଙ୍ଘ ଏଇ ଜୈନ ସମ୍ପ୍ରଦାୟକୁ (ଯୋଗୀ ସମ୍ପ୍ରଦାୟ) ଆନୁଷ୍ଠାନିକ ସ୍ୱୀକୃତ ଦେଲା । ସେମାନେ ତାଙ୍କର

ଧର୍ମ ପାଳନ କରି ନିଜର ସମାଜରେ ହିନ୍ଦୁ ଲୋକାଳୟ ପାଖରେ ରହିଲେ ।

କାର୍ତ୍ତିକ ମାସ, ମାଘମାସ ଓ ସ୍ଥଳ ବିଶେଷରେ ଚୈତ୍ରମାସରେ ସେମାନେ ଭିକ୍ଷା କରି ଚଳିବାର ବ୍ୟବସ୍ଥା ହେଲା । ସେମାନଙ୍କୁ ଘରେ ଡାକି ବସାଇ ଭୋଜନ ପରଶିବା ଇତ୍ୟାଦି ବିବଦମାନ ହେଉଥିବାରୁ ସେମାନଙ୍କୁ ଦିଆହେଉଥିବା ଦାନ—ଶୁଖିଲା ଭୋଜନ, ଡାଲି ଓ ପରିବା ଦାନରେ—ସୀମିତ ରହିଲା ଉତ୍ସାହ ଅଧିକ ହେଲେ କେହି ବସ୍ତ୍ରଦାନ ଓ ଲାଉତୁମ୍ବା ଦାନ ଦେଲେ ।

କିନ୍ତୁ ନୈଷ୍ଠିକ ଜୈନମତର ମୁଖବସ୍ତ୍ର (ନାକରେ କନା ବାନ୍ଧିବା) ଉଠିଗଲା । ସେମାନଙ୍କୁ ଗୃହୀ ହେବାର ଅନୁମତି ଦିଆଗଲା । ସେହିମାନେ ହେଲେ ପରଂପରା-ମାର୍ଜିତ ଭିକ୍ଷୁଶ୍ରେଣୀ । ଏମାନେ ବାହା, ଶ୍ରାଦ୍ଧ ଆଦି ଚଉଦିଗ ଭୋଜି ଓ ପଙ୍ଗତରେ ଯୋଗ ଦିଅନ୍ତି ନାହିଁ । ଚତୁର୍ମାସ୍ୟା ମୋଟାମୋଟି ରଜଠାରୁ ପୂଜାପାଏ ସେମାନେ ତାଙ୍କର ଚୁପ ରହନ୍ତି କମ୍ବା ବିଲବାଡ଼ି କରି ଚଳନ୍ତି । [ ଏତି ବିଲବାଡ଼ି କରିବା ସମ୍ବାଦ ନିର୍ଭୁଲ ନୁହେଁ ] ।

ଜୈନ ଭିକ୍ଷାପାତ୍ର ତିନି ପ୍ରକାରର (୧) ଲାଉତୁମ୍ବା (୨) କାଠ (୩) ପୋଡ଼ା ମାଟିର ହାଣ୍ଡି ।

ଧର୍ମ ଚଳିଲାବେଳେ ଏହି ନିଃସ୍ବ, ଦାରିଦ୍ର୍ୟ ଓ ସଂସ୍କୃତି ହୀନତାକୁ ଆଦର୍ଶ କରାଯାଇଥିଲା ।

ଜୈନମାନଙ୍କର ଚବିଶି ତୀର୍ଥକର ବା ତୀର୍ଥଙ୍କର । ଏହାର ଅର୍ଥ ଜୈନ ଧର୍ମର ଶାସ୍ତ୍ରକାର ଓ ମୁନି । ଏମାନେ ପ୍ରଚଳିତ ବ୍ୟବସ୍ଥା

ଅନୁସାରେ ଭାଷାରେ (ପ୍ରାକୃତ ଭାଷା) ଶିକ୍ଷିତ ଓ ସମକାଳୀନ ଧର୍ମମତ (ହିନ୍ଦୁ ଶାସ୍ତ୍ର, ପୁରାଣ ଓ ଆଖ୍ୟାୟିକା) ସମ୍ବନ୍ଧ ପରିଚିତ ।

ଚବିଶି ତୀର୍ଥଙ୍କର ମଧ୍ୟରୁ ସାତଜଣଙ୍କର ନାମ ଜଣା ନାହିଁ । ଏଥିରେ ପୁରୁଷ ଓ ସ୍ତ୍ରୀ ଉଭୟେ ଋଷଭନାଥ (୧) × (୨) ଅଜିତ (୩) ସମ୍ଭାବ (୪) ଅଭିନନ୍ଦନ (୫) ସୁମତି (ସ୍ତ୍ରୀ) (୬) ପଦ୍ମପ୍ରଭ (ସ୍ତ୍ରୀ) (୭) ସୁପ୍ରଭ (ସ୍ତ୍ରୀ) (୮) ଚନ୍ଦ୍ରପ୍ରଭ (ସ୍ତ୍ରୀ) (୯) ପୁଷ୍ପଦନ୍ତ (୧୦) ଶୀତଳ (୧୧) ଶ୍ରେୟାଂଶ (୧୨) × (୧୩) × (୧୪) ଅନନ୍ତ (୧୫) × (୧୬) ଶାନ୍ତ (ସ୍ତ୍ରୀ) (୧୭) × (୧୮) ଅର (୧୯) × (୨୦) ମୁନି ସୁବ୍ରତ (୨୧) ନାମି (ଇଏ ଜଣେ ରାଜା) (୨୨) ଅରିଷ୍ଟନେମି (୨୩) × (୨୪) ମହାବୀର ।

ଏଇ ଶେଷ ତୀର୍ଥଙ୍କର ମହାବୀରଙ୍କର ନାମ ଜୈନଧର୍ମ ସହିତ ଯୋଡ଼ା ହୋଇଛି ।

ମହାବୀର ଜଣେ କ୍ଷତ୍ରୀୟ । ଜନଶୃତି ଅଛି ଯେ ମହାପୁରୁଷ ଓ ଧର୍ମ ପ୍ରବର୍ତ୍ତକ ବ୍ରାହ୍ମଣୀ, ଗରିବ, ଚଣ୍ଡାଆ ଜାତି ଘରେ ଜନ୍ମଗ୍ରହଣ କରନ୍ତି ନାହିଁ । ପ୍ରଥମେ ମହାବୀର ବ୍ରାହ୍ମଣୀ ଜଠରରେ ଥିଲେ । ସେଇଠୁ ତାଙ୍କୁ ଦେବତାମାନେ ତ୍ରିଶଳା କ୍ଷତ୍ରୀୟାଣୀ ଜଠରକୁ ସ୍ଥାନାନ୍ତରିତ କରିଥିଲେ ।

ମହାବୀରଙ୍କର ବଡ଼ଭାଇ ନନ୍ଦବର୍ଦ୍ଧନ । ଝିଅ ପ୍ରିୟଦର୍ଶନା । ବଡ଼ ଭଉଣୀ ସୁଦର୍ଶନା ।

ବୁଦ୍ଧଦେବ ପରିବାର ଛାଡ଼ି ସନ୍ୟାସୀ ହୋଇଥିଲେ । ମହାବୀର ମଧ୍ୟ ପରିବାର ଛାଡ଼ି ସନ୍ନ୍ୟାସୀ ହେଲେ । ଅନ୍ୟାନ୍ୟ ସାଧକମାନେ ସେହିପରି ପରିବାରର ମୋହ ତୁଟାଇ ସନ୍ନ୍ୟାସୀ ହୋଇଥିଲେ ।

ତେଣୁ ବାଳ-ବ୍ରହ୍ମଚାରୀ ନାହାନ୍ତି । ଅତ୍ୟୁଚ୍ଚ ବ୍ରହ୍ମଚାରୀ ହେବା ସମ୍ଭବ ହେଇ ନ ଥିଲା ।

କିନ୍ତୁ ବ୍ରହ୍ମଚର୍ଯ୍ୟ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଥିଲା ।

ବାବାଜୀ ବ୍ରହ୍ମଚର୍ଯ୍ୟ ରଖିବ । ···ଏଁ ଏମିତି ରଖିଲା ବାଲା ? ମହିଳାମାନେ ବାବାଜୀର ବ୍ରହ୍ମଚର୍ଯ୍ୟ ମାର୍ଗରେ ପ୍ରତିବନ୍ଧକ ହେଲେ ।

ସେମାନେ ଆସି ଉଲଗ୍ନ ହେଲେ । ମିଠା କଥା କହିଲେ । ସୁଆଦିଆ ମସଲାଦିଆ କାମ-ଉତ୍ତେଜକ ଖାଦ୍ୟ ଖୁଆଇଲେ । ପାମାପୁ ଢ ଦେଲେ । ନରମ ବିଛଣା ପାର ଶୁଆଇଲେ । ବାବାଜୀର ପଣ ଭାଙ୍ଗିବା ହେଲା ଗୋଟାଏ ଖେଳ ।

କେତେ ଶାସ୍ତ୍ରକାରମାନେ ନାରୀ ନରକର ଦ୍ୱାର ବୋଲି ପ୍ରଚାର କରୁଥାନ୍ତି । (ଡିମାଖ୍ରୁ ଖାଇଲେ କାନସର ହେବ ବୋଲି ପ୍ରଚାର) ଗ୍ରେଟ ପିଲାଙ୍କୁ ମାଆ କ୍ଷୀର ଖୁଆଇବା ପରି ପ୍ରଚାର ।

ଦତ୍ତକ (କିଏ ଜଣା ନାହିଁ) ସ୍ତ୍ରୀ ବେଦ କରିଥିଲେ । ଏଇ ଦରବୁଢ଼ା ବାବାଜୀ ଓ ବାହ୍ରାପୁନ ସମାନ ଲୁହନ୍ତି ।

ମହାବୀରଙ୍କ ବିଷୟରେ ବିଶିଷ୍ଟ ଜର୍ମାନ ବିଶେଷଜ୍ଞ (ସେ ଜୈନ ସୂତ୍ରକୁ ଦୁଇଟି ବଡ଼ ଗ୍ରନ୍ଥରେ ଅନୁବାଦ କରିଛନ୍ତି) HERMAN JACOBI କହିଛନ୍ତି··· ।

Mahabira owed his position not by the sanctity of his life but due to success in propagating the creed.

ଧର୍ମ ପ୍ରବର୍ତ୍ତନ ଓ ଧର୍ମ ତତ୍ତ୍ୱର ଏକା କଥା ନୁହେଁ । କିନ୍ତୁ ସମକାଳୀନ ସମାଜରେ (ଅଢ଼େଇ ହଜାର ବର୍ଷ ତଳେ) ଜୈନମତ ଗ୍ରହଣୀୟ ହୋଇଥିଲ ।

ବାବାଜୀମାନଙ୍କର (ଶ୍ରମଣ) ଚଳଣି ପାଇଁ ପକ୍କା ନିୟମ କଟ ହୋଇଥିଲ । ବାବାଜୀଙ୍କର ବାଇଶିଟି ଅସୁବିଧା (୧-୨) ଭୋକଶୋଷ (୩-୪) ଥଣ୍ଡା-ଗରମ (୫) ମାଛି ଡାଆଁସ ଉତ୍ପାତକୁ ସହିବା (୬) ଲଙ୍ଗଳା ରହିବା-ଜିନକଳ୍ପିକା । ସାଧୁର ସଂଯମର ଇଏ ହେଉଛି ସର୍ବସାଧାରଣ ପରୀକ୍ଷା (୭) ନିଜର ସଂଯମରେ ଅସନ୍ତୋଷ (୮) ନାରୀଙ୍କର ଉତ୍ପାତ (୯) ବିଶୃଙ୍ଖଳ ବା ଖାମଖିଆଲି ଜୀବନ (୧୦) ବସିବା ଜାଗାର ଅଭାବ (୧୧) ରହିବା ଥାନ (୧୨) ସାଧାରଣରୁ ଗାଳି ଧିକ୍କାର ପାଇ ସମ୍ଭାଳିବା (୧୩) ପିଲାଙ୍କର ଓ ବଡ଼ଙ୍କର ମାଡ଼ (୧୪) ମାଗିବା (୧୫) ମାଗିଲେ ମଧ୍ୟ ନ ପାଇବା (୧୬) ବେମାର ପଡ଼ିବା (୧୭) ଅରମାକଣ୍ଟା ଇତ୍ୟାଦି ଜୈନ ସାଧକ ଏମାନଙ୍କୁ ବରଦାସ୍ତ କରିବା (୧୮) ମଇଳା (୧୯) ଆଦର ପାଇବା ଓ ସମ୍ମାନ ପାଇବା (୨୦) ନିଜର ଅନୁଭବ ନେଇ ପ୍ରତ୍ୟେକ ଘଟଣା ବୁଝିବାର ଅସୁବିଧା (୨୧) ଅଜ୍ଞତା ବା ସ୍ଥାନକାଳ ପାତ୍ରର ଜ୍ଞାନର ଅଭାବ (୨୨) ପରିବ୍ରଜ୍ୟା ।

ଏହି ଅସୁବିଧାମାନ ସମ୍ଭାଳି ଜୈନ ଶ୍ରମଣ ଆଗେଇଯାଏ । ତାଙ୍କର ବି ବହୁତ ଅସୁବିଧା ।

(୧) ଦାନ୍ତକାଠିରେ ଦାନ୍ତ ଘଷିବ ନାହିଁ । (୨) ଥଣ୍ଡା ପାଣି ପିଇବ ନାହିଁ କିମ୍ବା ମୁହଁ ଧୋଇବ ନାହିଁ । (୩) ଥଣ୍ଡା ହେଲେ ନିଆଁ ଜାଳିବ ନାହିଁ । (୪) ଖରାରେ ମୁହଁ ହାତ ପୋଡ଼ିଗଲେ ବି ଓହୋ-ଓହୋ ହବ ନାହିଁ । (୫) ଏକା ଠିକଣାରେ ରହିବ ନାହିଁ । ଶ୍ମଶାନ,

ଖାଲି ଘର ଓ ଗଛତଳେ ରହିବ । ନିଜର କିଛି ସମ୍ପଦ ରହିବ ନାହିଁ ।

ହୃଦୟର ପବିତ୍ରତା ଓ ପାପର ପ୍ରତିକାର—ଓଡ଼ିଆରେ ଇଏ ହେଲା ମନ ପୂତ ଥିଲେ ଗଡ଼ିଆ ଗଙ୍ଗା ।

ପାପର ସଜ୍ଞା ହେଲା (୧) ନିଜେ କରିବା (୨) ନିଜେ ମତ ଦେଇ କରାଇବା (୩) ପାପ କାର୍ଯ୍ୟକୁ ସମର୍ଥନ ଦେବା ।

ଜଣେ ଚୋରି କରି କିଛି ଆଣିଛି ତାକୁ ଗ୍ରହଣ କରିବା ମଧ୍ୟ ପାପ (ସ୍ୱତନ୍ତ୍ର ଚିନ୍ତା) ।

ଦୁଃଖର କାରଣ ବୁଝିବା ଦରକାର ମନ୍ଦ କାମରୁ ଦୁଃଖ ହୁଏ । ଦୁଃଖର ଉତ୍ପତ୍ତି କଥା ନ ଜାଣିଲେ ପ୍ରତିକାର କରାଯାଇ ପାରିବ ନାହିଁ ।

ହତ୍ୟା କରନାହିଁ—ବଡ଼ ମଣିଷଙ୍କୁ ହତ୍ୟା, ଭ୍ରୂଣ ହତ୍ୟା, ବିଭିନ୍ନ ବୟସରେ ପ୍ରାଣୀଙ୍କର ହତ୍ୟା ।

ଜୈନ ଶ୍ରମଣ ମନେ ରଖିବ ଯେ ଲୋକେ କେତେକ କାର୍ଯ୍ୟାନୁଷ୍ଠାନ କରି ନିଜକୁ ସାଧୁ ବୋଲି ବୁଝନ୍ତି । କିନ୍ତୁ ନିଷ୍ପାପ ହୃଦୟ ହେଉଛି ସାଧୁର ଲକ୍ଷଣ ।

ଜୈନ ଶ୍ରମଣ ଏଣୁ ତେଣୁ କଥା, କଥନିକା, ଗପ କରିବ ନାହିଁ । ଅକାରଣରେ ତତ୍ତ୍ୱନେଇ ମନ୍ତ୍ର ଖେଳେଇବ ନାହିଁ । ନିନ୍ଦା ଚୂଗୁଲି ଛାଡ଼ି ନିଜକୁ ଲୋଭ, ଠକେଇ, ଗର୍ବ ଓ ତପ ଗୁଣଠାରୁ ଦୂରରେ ରଖିବ ।

ସେ ଭଲ କରି ବୁଝିବ ଯେ ଆନନ୍ଦ ହେଉଛି ଗୋଟିଏ ଭିକମର ରୋଗ ।

ବାବାଜୀଙ୍କୁ ଲୋକ କୁକୁର ଦେଇ କାମୁଡ଼ାନ୍ତି । ବାବାଜୀଙ୍କୁ ଦଣ୍ଡା, ଅସନା, ସାଦୁଆ, ନଙ୍ଗଳା ଆଦି ବିଭିନ୍ନ ପ୍ରକାରର ବିଶେଷଣରେ ଆଘାତ କରନ୍ତି ।

କିନ୍ତୁ ବାବାଜୀଙ୍କୁ ଅଧିକ ସାବଧାନ ରହିବାକୁ ପଡ଼େ ନାଗାମାନଙ୍କଠାରୁ ।

ନାଗାମାନେ ଭାବୁଥିଲେ ବ୍ରହ୍ମଚର୍ଯ୍ୟ ଓ ସତ୍‌ମାର୍ଗର ପଥିକ ଶ୍ରମଣମାନଙ୍କର ସନ୍ତାନ ଉଚ୍ଚ ଶ୍ରେଣୀର ହେବ । ଏହି ବିଶ୍ୱାସମଠ ମନ୍ଦିରରେ ଆଜ ପର୍ଯ୍ୟନ୍ତ (୧୯୮୮) ପର୍ଯ୍ୟନ୍ତ ରହିଛି । ସମ୍ଭ୍ରାନ୍ତ ବଂଶର ନିୟୋଗ ସନ୍ତାନପରି ଅଘୋରଦୁଆର ସମାଜ ଉଚ୍ଚ ଶ୍ରେଣୀର ସନ୍ତାନ ପାଇଁ ମଠାଧୀଶ ଦେବ-ପୂଜକ ଓ ବ୍ରହ୍ମଚର୍ଯ୍ୟଙ୍କୁ ଧରିବାକୁ ଚେଷ୍ଟା କରୁଥାନ୍ତି ।

ମାଂସ ଖାଇଲେ ସିଂହ ଯନ୍ତ୍ରରେ ପଡ଼େ । ଜାଣିଆ ହରିଣ ବି ଫାଶରେ ପଡ଼େ । ଯେଉଁମାନେ ସଂଯମ ପୂର୍ବ ପାଳ ନ ପାରନ୍ତି— ନାଁ ବାବାଜୀ ନାଁ ଗୃହୀର ମଝିଆ ମଝି ଅବସ୍ଥାରେ ରହନ୍ତି ।

ଗୁରୁଦେବ ଶିଷ୍ୟଙ୍କୁ ଦଣ୍ଡକଙ୍କର ଲେଖା ସ୍ତ୍ରୀ—ବେଦକୁ ପଢ଼ାନ୍ତି । ସ୍ତ୍ରୀ ପାଖରେ ତୁମେ ରହିଲେ ନିଆଁରେ ଜଉ ପରି ତରଳିଯିବ । ନାଗା ତାହାର କଅଁଳ କଥା, ପୋଷାକ ଆଚରଣ ଦେଖାଇ ସାଧୁଙ୍କୁ ଏକାବେଳେକେ କଥାରେ, କାମରେ ଓ ବ୍ୟବହାରରେ ନଜର କରିନବ ।

ଏହାକୁ ଜଗିବ । କିନ୍ତୁ ସମ-ଲିଙ୍ଗୀ ମୈଥୁନ ଓ ପଶୁ-ମୈଥୁନ ପରି ପାପ କରିବନାହିଁ । ମାଇଚିଆମାନଙ୍କଠାରୁ ଦୂରରେ ରହ ।

ଏଥିରେ ଯଦ ବ୍ରହ୍ମଚର୍ଯ୍ୟ ନଷ୍ଟ ହୁଏ ତେବେ ନଜର ସ୍ଥାମୀପୁ ଆଚାର୍ଯ୍ୟଙ୍କୁ କହିଦେଇ ଅନୁତାପ କର । ବ୍ରହ୍ମଚର୍ଯ୍ୟ ଅଭ୍ୟାସ ହେବ ।

ପୃଥିବୀର ସମସ୍ତ ଧର୍ମରେ ଶାରୀରିକ ଓ ମାନସିକ ବ୍ରହ୍ମଚର୍ଯ୍ୟକୁ ଗୁରୁତ୍ୱ ଦିଆଯାଇଛି । କିନ୍ତୁ ବ୍ରହ୍ମଚର୍ଯ୍ୟ ଯେ ଅବଶ୍ୟ ଅନୁଷ୍ଠେ ହେଇ ରହିବ ଏହାର ବାଧ୍ୟବାଧକ୍ତା ହୋଇ ନାହିଁ ।

ଧର୍ମମତର ଭିତ୍ତିଭୂମି ହେଉଛି ନୈଷ୍ଠିକତା-ନିଷ୍ଠା । କିନ୍ତୁ ଯେଉଁଠି ଏହାର ବ୍ୟତ୍ୟୟ ହୋଇଛି ଧର୍ମମତର ଆଚାର୍ଯ୍ୟମାନେ ସହନଶୀଳତା ଦେଖାଇଛନ୍ତି ।···ଓଡ଼ିଆରେ କଥା ଅଛି···

ଯୋଗୀପାଇଁ ସିନା ଯୋଗୀଆଣୀ ମଲା
ରଜା ମଲେ କାହା ପାଇଁ ?

× × ×

···ମାଉ···ମାଉ·· ମାଡାନ୍ତି ।

× × ×

···ଏଇ ହାଣ୍ଡି ଘୋଡ଼ା, ଏଇ ପାଟ—ଛତା
ଭୋହର କାପର ଥିଲା;
ମଲାବେଳେ ସେହି ଗୋବନ୍ଦ—ଚନ୍ଦ୍ରରେ
ଛିଣ୍ଡା ପଲଙ୍କରେ ଗଲା ।

× × ×

ଛୁଇଁବେ ନାହିଁ ତଡେ ବୋଲିବେ ମଡ଼ା

× × ×

ଜୈନ ମତରେ ସ୍ଥାବରଜଣ ମଡ଼ ବୋଲିବେ—କ୍ଷିତ, (ମାଟି) ଅପ (ପାଣି) ତେଜ (ଅଗ୍ନି) ମରୁତ୍ (ବାୟୁ)·····

ଝିଅ୍ ମତ ବାୟୁ ଓ ବ୍ୟୋମର ପ୍ରଭେଦ ବୁଝୁଥିଲ । ସେମାନେ ପଞ୍ଚମ ଲୋକକୁ ମଣ୍ଡ ହୋଇବାକୁ ଦେଉଥିଲେ ।

ଜୈନମାନେ ଝିଅ୍ ଥିଲେ । ସେହି ଝିଅ୍ ମାନେ ପର୍ବତରେ ପାଣି ପୃଥ୍ୱୀକୁ ଧୋଉଛନ୍ତି ନାହିଁ । ଖାଲି ପାପକୁ ଧୋଇବ ? ଜୈନମାନେ ମୋଟେ ପାଣି ବ୍ୟବହାର କରୁ ନ ଥିବାରୁ ପାଣିର କେଉଁଠ, ଘାଟି କରି କଥା । ଭାମ କହୁଥିବା କଧମାର କ'ଣ ଈଶ୍ୱରଙ୍କର ନକଟ ହୋଇଗଲେ ବୋଲି ପ୍ରଶ୍ନ ପାଉଥିଲେ ।

ତେଣୁ ସ୍ଥିର ହେଲା—ସତ୍ ହେଉଛି ସିଦ୍ଧିର ମାର୍ଗ । ଭୁଣ୍ଡ କଥାରେ ସିଦ୍ଧି ଆସେ ନାହିଁ ।

ଜୈନ ଶାସ୍ତ୍ରର ପ୍ରଣୟନ ପାଇଁ ବଡ଼ବଡ଼ ଶ୍ରେଣୀର ଓ ମାନର ସାଧକ ବାହାରିଲେ ନାହିଁ । ତେଣେ ବୌଦ୍ଧଧର୍ମ ପ୍ରାଧାନ୍ୟ ନେଉଛି, ତେଣୁ ଜୈନ ସାଧକମାନେ ଲୋକସମାଜକୁ ଦେଖି ଦେଶ-କାଳ ପାତ୍ର ପାଇଁ ଅନେକ ଗ୍ରୋଟବଡ଼ ନିୟମ କଲେ ।

ପ୍ରଧାନ ସୂତ୍ର ହେଲା—ଅହିଂସା ଓ ନିଜର ମୃତ୍ୟୁ । ···ଆମେ କିବା ମଣିଷ, ମରିଗଲେ କ'ଣ ବା କ୍ଷତି ?

ମର ଦେହ ମୋର ମିଶୁ ଏ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠରେ ।
ସମସ୍ତେ ମୌନ ରହ ।

କାରଣ କଥା କହିଲେ ସତ କଥା-ମିଛ କଥା-ସତ ଭଲଆ ମିଛର ଭେଳକ କଥା ଲୋକଙ୍କୁ ବିବ୍ରତ କରିବ । ଯେ ଯେପରି ବୁଝିଲେ ସେହିପରି ଧର୍ମକୁ ପ୍ରଚାର କଲେ—

କଏ ନିଜ ଘରକୁ ମୋଟେ ଗଲନାହିଁ । କଏ ଘର ଗଲ ସେଠି ଝିଅ ବୋହୂ ଦାସୀ ମାଈଚଅା ଓ ପଶୁପକ୍ଷୀଙ୍କଠାରୁ ଦୂରରେ ରହିଲ । ଏଣେ ଘରୁ ବଳ ଦଳ ହୋଇ ଲୋକ ଏଇ ବଇଷିମ ମାର୍ଗ ଛାଡ଼ ପୁଣି ଘରକୁ ଫେରବାକୁ ଡାକନ୍ତି ।

ଗୋଟିଏ ଆଡ଼େ ମମତା ଓ ଆରପାଖରେ ବୈରାଗ୍ୟ । କେତେ ମଧ୍ୟ ଭଲ ସଦାଚାରୀ ଗୃହସ୍ଥ ହୋଇ ଅହିଂସା ବରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରୁଥାନ୍ତି ।

ଭଗ୍ନା କୁହି ଭଗବତା ଭବନ୍ତୁ...

ମାଆକୁ କହିବୁ ବଳଦ ନ ବକୁ

ବଇଷିମ ହେବା ନୋହିଲ୍...

ଏହିପରି ଭାବରେ ଆସିବା ଯିବା ଲଗ ରହୁଛି ବୋଲି ଧର୍ମର ଖାତିର ରହିଛି । ଏକଦମ ବାନପ୍ରସ୍ଥ ଓ ପରେ ଯତିବ୍ରତ ବା ଅପରନ୍ତରର ମରଣ ତାହାର ପ୍ରାସଙ୍ଗିକତା ହରାଇଲ । ହିନ୍ଦୁମତ ଦୁର୍ବଳ ହୋଇଗଲ ।

ଏଇ ଅହିଂସା ଓ ବ୍ରହ୍ମଚର୍ଯ୍ୟର ଅର୍ଥ ଓ ଅର୍ଥାନ୍ତର ଆଜି ପର୍ଯ୍ୟନ୍ତ ଚାଲିଛି । ଲୋକ ସତ୍, ସୁଶୀଳ, ସଦାଚାରୀ ଓ ଧର୍ମପ୍ରାଣ ହେବାକୁ ଏବେ ଯାଏ ଚେଷ୍ଟା ଚଳାଉଛନ୍ତି ।

ଏବେ ନୈଷ୍ଠିକ ଜୈନ ସାଧକ ଅଛନ୍ତି । ତାଙ୍କୁ ଚଳେଇ ରଖିଛି ସ୍ଥାମାପୂ ମତ । ଜୈନ ପରିବାର ଧର୍ମବିଶ୍ୱାସ ଛାଡ଼ି ନାହାନ୍ତି । ଜୈନ ତୀର୍ଥଙ୍କର ଓ ସାଧକଙ୍କର ପୂଜା କରୁଛନ୍ତି ।

ଜୈନ ସାଧୁ ମଧ୍ୟ ଅତ୍ୟନ୍ତ ଉଚ୍ଚ କୋଟିର ହୋଇ ରହିଛନ୍ତି । ତାଙ୍କର ସାଧକ ସମାଜ ଓ ଗୃହୀ ସମାଜ—ଏହିପରି ଦୁଇଟି ସ୍ତର ରହିଛି ।

ଜୈନ ମତରେ ଜ୍ଞାନ ଠାରୁ ବିଶ୍ୱାସକୁ ବଡ଼ ସ୍ଥାନ ଦିଆହୋଇଛି । ଜ୍ଞାନର ପରିମାଣ ଅଧିକ ହେଲେ ଗର୍ବ ଆସିବ । କନୁ ଧନ ଓ କ୍ଷମତାରେ ଉଚ୍ଚ ମଣିଷ ରହିବାକୁ ବାଧ୍ୟ—କନୁ ଲଗାମଛଡ଼ା ହେବେ ନାହିଁ ।

ପାପ ହେଉଛି ଜୈନ ମତର ପ୍ରଧାନ କଥା । ପାପ ଅନେକ ପ୍ରକାରର (୧) ନିଜ ପାଇଁ ବା ନିଜର ସାଙ୍ଗସାଥୀଙ୍କ ପାଇଁ ବା ନିର୍ଭର କରୁଥିବା ଲୋକଙ୍କ ପାଇଁ ବା ଠାକୁରଙ୍କ ପାଇଁ ବା ନିଜର କୋଠାବାଡ଼ି ପାଇଁ ।

ଦ୍ୱିତୀୟ ପାପ—(୨) ବୃଥା ପାପ । ଚମଡ଼ା ଆଦି ବେପାରି ବା ଘାସରେ ନିଆଁ ଗୁଞ୍ଜି ସଫାସୁତର କରିବା । ତୃତୀୟ ପାପ (୩) ଭୁଲ ଭଟକା (୪) ମିଛ କହି ପାପ କରାଇବା (୫) ନିଜର ଜାତି ବଂଶ, ପଦମର୍ଯ୍ୟାଦା ଆଦି ପାଇଁ । (୬) ଲୋଭ (୭) ଗୁଣୀ ଗାରେଡ଼ି କରିବା ।

ଦ୍ରାବିଡ଼, କଳିଙ୍ଗ, ଗୌଡ଼, ଗାନ୍ଧାର ବା ଚଣ୍ଡାଳ ବା ଶବରଙ୍କ ଦ୍ୱାରା ଗୁଣୀଗାରେଡ଼ି କରାଇବା । ଏଇ ଗୁଣୀଗାରେଡ଼ି ଅଢ଼େଇ ହଜାର ବର୍ଷ ହେଲା ଚାଲିଛି ।

ଅଢ଼େଇ ହଜାର ବର୍ଷ ତଳେ ସାଧକମାନେ କମିଆଁ କରି ସ୍ତ୍ରୀ ଲୋକ ନେଇ ଯାଉଥିଲେ ।

ଜୈନମାନେ ଚାରିପ୍ରକାରର ତତ୍ତ୍ୱ ପ୍ରଚାର କରୁଥିଲେ (୧) କ୍ରିୟାବାଦୀ—ଏହାର ଶହେ ଅଶି ଶାଖା (୨) ଅକ୍ରିୟାବାଦୀ—ଏହାର ଚଉରାଅଶି ଶାଖା (୩) ଅଜ୍ଞେନିକବାଦୀ—ଏହାର ଷାଠିଏ

ଶାଖା (୪) ବୈନାୟିକବାଦ—ବତିଶି ଶାଖା । ମୋଟ ତିନିଶହ ତେଷଠି ଶାଖା ।

କିନ୍ତୁ ପ୍ରାମାଣିକ ଗ୍ରନ୍ଥ ନାହିଁ ।

ଖାଲି ରହିଛି ଯେ ବାବାଜୀ ଦାନ୍ତକାଠିରେ ଦାନ୍ତ ଘଷିବ ନାହିଁ । କଜଳ ଘେନିବ ନାହିଁ । ବାନ୍ତି ଔଷଧ ଖାଇବ ନାହିଁ । ସୁଗନ୍ଧ ଦ୍ରବ୍ୟ ବା ଫୁଲ ବା ଅଳଙ୍କାର ପିନ୍ଧିବ ନାହିଁ ।

ବାବାଜୀଙ୍କର ପ୍ରଧାନ ପାପ ହେଉଛି—ଭୁଲ କଥା ବା ମତକୁ ବିଶ୍ୱାସ କରିବା ।

ତେଣୁ ସାଧକ ସବୁବେଳେ ମନରେ ସବୁ କଥା ଭାବୁଥିବ । ସେ ଦେଖୁଥିବ ଯେ ତାହାର ଦୃଶ୍ୟମାନ ଶରୀର ଅଛି । କର୍ମଶରୀର ଅଛି । ତୈଜସ ଶରୀର ଥିବାରୁ କ୍ଷୁଧା-ଅଗ୍ନି ଅଛି । ବୈକଳ୍ପ ଶରୀର ଅଛି । ସେ ନିଦରେ ବା ଚେଇଁ ଥିଲାବେଳେ ନିଜେ ଦେହରୁ ବାହାରି ଏଣେ ତେଣେ ଯାଇପାରନ୍ତି । [ ପ୍ରତ୍ୟେକ ସାଧକ ଏହି କ୍ଷେତ୍ରର ଅଧିକାରୀ ।

କିନ୍ତୁ ଲୋକମତକୁ ବିଚାରକୁ ନେଇ ନିୟମ ନିଆଗଲା—ସମସ୍ତେ ଭେକ ରଖିବେ । ତାହାହେଲେ ସାଧକ ଚିହ୍ନା ପଡ଼ିବ ।

ହିନ୍ଦୁଶାସ୍ତ୍ରର ଅନେକ ବିଷୟ ଜୈନମତ ନିଜର କରିଛି । ହିନ୍ଦୁମତରେ ମଣିଷର ଜୀବନ ଓ ସମସ୍ତ ପ୍ରାଣୀଙ୍କର ଜୀବନକୁ ପାଣି ଫୋଟକା ପରି ଦେଖାଯାଏ । ଜୈନ ମତ କହେ ଯେ ମଣିଷ ହେଉଛି କୁଶ ଅଗରେ ଝୁଲୁଥିବା ଶିଶିର ବିନ୍ଦୁ । ପବନ ହେଲେ ଝଡ଼ିଯିବ ।

ଜନ୍ମ-ଚକ୍ରକୁ ଜୈନ ମତ ଗ୍ରହଣ କରେ...

ପୁନରପି ଜନନଂ ପୁନରପି ମରଣଂ
ପୁନରପି ଜନନୀ ଜଠରେ ଶୟନଂ ।

ସତ୍‌କର୍ମ ନ ଥିଲେ ମଣିଷ ପାପୀ ପରିବାରରେ ଜନ୍ମ ନିଏ । ତାହାର ଷୋଡ଼ଶ ପ୍ରକାରର ରୋଗ ହୁଏ । (୧) ବଧିର (୨) କୁଷ୍ଠ (୩) ଯକ୍ଷ୍ମା (୪) ମାନସିକ ଅବସାଦ ରୋଗ (୫) ଅନ୍ଧତ୍ୱ (୬) ଅଚଳ ଶ୍ରେଣି (୭) ଶ୍ଳେଷ୍ମା (୮) କୁଜା (୯) ଉଦ୍ଧୃଙ୍ଗ (୧୦) ବୋବା (୧୧) ଅପସ୍ମାର (୧୨) ଆଖିବେମାରି (୧୩) ଦେହଥରା (୧୪) କେମ୍ପା (୧୫) ଗୋଦର (୧୬) ବହୁମୂତ୍ର ମଧୁମେହ ।

ତେଣୁ ରୋଗ ସହିତ ପାପର ସମ୍ପର୍କ ରହୁଛି । ଦାରିଦ୍ର୍ୟ ସହିତ ପାପର ସମ୍ପର୍କ ରହୁଛି । ଉଚ୍ଚଜାତି ଓ ଉଚ୍ଚବର୍ଣ୍ଣର ଲୋକ କେବଳ ପୂର୍ବଜନ୍ମରେ ସତ୍ ଓ ସଦାଚାରୀ ଥିଲେ । ଏହା ହୋଇଥିବା ଯେତିକି ସମ୍ଭବ, କାକ-ତାଳୀୟ ନ୍ୟାୟରେ ମଧ୍ୟ ସେତିକି ସମ୍ଭବ ।

ଅନୁଭବରୁ ଜଣାଯାଏ ଯେ ଭଲ ହେବାର ଇଚ୍ଛା ପ୍ରତିଷ୍ଠିତ ପରିବାର ଓ ସମୃଦ୍ଧ ସମାଜରେ ଯେତିକି ଦେଖାଯାଏ, ଦରିଦ୍ର, ନିପୀଡ଼ିତ ଓ ବିପର୍ଯ୍ୟସ୍ତ ସମାଜରେ ଓ ସହସା-ଧନୀ ହୋଇଥିବା ଚଳୁଆ ପରିବାରରେ ସେହି ଆକାର ଓ ପ୍ରକାରରେ ଦେଖାଯାଏ ନାହିଁ ।

ସ୍ୱାମୀ ବିବେକାନନ୍ଦ କହିଥିଲେ ଯେ ମଣିଷ ପୂର୍ବ ଜନ୍ମର ସୁକୃତି ବଳରେ ଭାରତ ବର୍ଷରେ ଓ ଭାରତର ସଂସ୍କୃତି-ସମ୍ପନ୍ନ ପରିବାରରେ ଜନ୍ମ ପାଇଥାଏ ।

ଏହାର ବିରୋଧ ଯୁକ୍ତି ହେଉଛି ଯେ ବିନା ଦୋଷରେ ଜଣେ ବା କେତେକ କ'ଣ ପାଇଁ ନିଜର ଇଚ୍ଛା ବିରୁଦ୍ଧରେ ଅଭିଶପ୍ତ ଜୀବନ ବିତେଇବେ ?

ଏଇ ପ୍ରଶ୍ନ ଭାରତରେ ଗତ ପଚଶି ହଜାର ବର୍ଷ ହେଲାଣି ଉଠୁଛି । ଉତ୍ତର ଗୋଟିଏ—ଜନ୍ମାନ୍ତର ବାଦ । ଏଇ ଜନ୍ମାନ୍ତର ବାଦକୁ ବୁଝିବା ଓ ଠଉରାଇବା କଷ୍ଟକର । କାରଣ ମଣିଷ ତାହାର ପରମାୟୁର ପରିଚ, ଷାଠିଏ ସତୁରି ବର୍ଷ ଏଇ ପ୍ରହେଳିକାର ଉତ୍ତର ଖୋଜୁଛି ଓ ପାଉନାହିଁ । କାରଣ ତାହା ପାଇଁ ପରିବେଶ ଏପରି ହୋଇ ରହିଥାଏ ଯେ ସେ ତାହାର ଜନ୍ମର ନିର୍ଦ୍ଦିଷ୍ଟ ପରିଧି ବା ଭଉଁରୀରୁ ବାହାରି ପାରେ ନାହିଁ ।

ଏହାର ଉତ୍ତର ଜୈନ ମୁନିମାନେ ଦେଇ ନାହାନ୍ତି । ଦେଖାଯାଉଛି ଯେ କଳା ମଣିଷ ଗୋରା ମଣିଷ, ହଳଦିଆ ମଣିଷ ବା ନାଲି ରଙ୍ଗର ମଣିଷ ହୋଇ ନ ପାରିଲା ପରି ଜୈନ ପରିବାରରେ ହିନ୍ଦୁମତ ବା ହିନ୍ଦୁ ପରିବାରରେ ବୌଦ୍ଧ ମତ ସାଧାରଣରେ ବାହାରି ପାରୁନାହିଁ ।

ଅନୁଭବ ଶିଖାଏ ଯେ ବାପାର ଡାହାଣ ପାଦ ଖୋଦର ଥିଲା । ପୁଅର ବି ହେଲା । ବାପାର ଡାହାଣ ପାଦ ଗୋଦର ଥିଲା ଓ ସେ ଯାହାକୁ ବାହା କରି ଆଣିଲା ତାହାର ମଧ୍ୟ ଡାହାଣ ପାଦ ଗୋଦର । ନିଜର ପରିବେଶରେ ମିଳୁଥିବା ଡାକ୍ତରମାନେ ଏହାର ଯଥାଯଥ ଉତ୍ତର ଦେଇ ପାରୁନାହାନ୍ତି । ଡକ୍ଟର ରାଧାକୃଷ୍ଣନ ଏହାକୁ କହିନ୍ତି ଗୋରୁ ବନ୍ଧା ହୋଇଥିବା ପଘାର ଲମ୍ବ, ହେଉଛି ମଣିଷର ଇଚ୍ଛାକ୍ଷେତ୍ରର ମାପ । ତେଣୁ ଯାହାକୁ ଯାହା ମିଳୁଛି ସେଥିରେ ସେ ସନ୍ତୁଷ୍ଟ ହୋଇ ରହିବାକୁ ଶିଖୁ ଓ ବଳ ବହପ ବାହାରେ କୁଦା ମାରି ଗୋଡ଼ ହାତ ନ ଭାଙ୍ଗୁ ।

ଜୈନ ସାଧନା ବାହାରକୁ ଭିତରକୁ ବେଶି ଠେଲେ ନାହିଁ । ଗୋଟିଏ ବାଟ ଦେଖାଏ—ଟ୍ୟୁବ୍ ଇନ୍ଦୁରେ ଚଳ ଓ ଭୂମର ଠାକୁରଙ୍କୁ

( ତୀର୍ଥଙ୍କର ) ଧ୍ୟାନ କର । ଫଳରୁ ଈଶ୍ବର ତାଙ୍କ ଉପରେ ଗୁଡ଼ାଇଅ ।

ଏଥିରେ ଜ୍ଞାନର କଥା ନାହିଁ ।
ଏଥିରେ ଭକ୍ତିର କଥା ନାହିଁ ।

ଏଥିରେ ରହିଛି ଶ୍ରଦ୍ଧା ଓ ବିଶ୍ବାସ । ଏତକ ହିନ୍ଦୁମତରେ ଦୁର୍ଲଭ ବସ୍ତୁ । ଏଠି ପ୍ରତ୍ୟେକ ହୋଇଛନ୍ତି ଈଶ୍ବର—ଉପରେ ବଡ଼ ଈଶ୍ବର ଓ ତଳେ ଶ୍ରେଷ୍ଠ ଶ୍ରେଷ୍ଠ ଈଶ୍ବର ।

ଜୈନ କହିଲେ ମୋଟା ମୋଟି ବୁଝିବାକୁ ହେବ—ଅକଞ୍ଚନର ଦର୍ଶନ । ଯାହାର କେହି ନାହିଁ ତାହାର ପ୍ରଭୁ ହୋଇଛନ୍ତି ସାହା । ଏଥିପାଇଁ ସେମାନେ ନିଜର ଚେଷ୍ଟାରୁ ଓହରି ଯାନ୍ତି ।···ଠିକ୍ ଏମିତି କୁରୁ ଦରବାରରେ ଦ୍ରୌପଦୀଙ୍କର ବସ୍ତ୍ରହରଣର ଚେଷ୍ଟା ହେଲାବେଳେ ଦ୍ରୌପଦୀ ନିଜ ଆଡ଼ୁ ବାଧା ଓ ପ୍ରତିବାଦ ଉଠାଇ ନେଇଥିଲେ । ଜୈନ ଦର୍ଶନ ଠିକ୍ ଏହି ପ୍ରକାର ଷୋଳ ଅଣା ଆତ୍ମ-ଉତ୍ସର୍ଗର ଦର୍ଶନ । ଆଜ (୧୯୮୮) ମଧ୍ୟ ଏହି ବ୍ରତ ପାଳୁଥିବା ଜୈନ ସାଧକ ଯଥେଷ୍ଟ ରହିଛନ୍ତି ।

କିନ୍ତୁ ପ୍ରଚଳିତ ସମାଜର ପ୍ରତିଦ୍ବନ୍ଦିତା ମୂଳକ ଜୀବନର ବାଟରେ କେତେକ ପ୍ରଶ୍ନ ଜୈନ—ଦର୍ଶନରୁ ଉତ୍ତର ମାଗୁଛି । ପାଉ ନାହିଁ । ପ୍ରଶ୍ନ (୧) ଗାଈର ଗୋଡ଼ ପଚିଆ ଖସିଛି । ସେ ଉଠି ପାରୁନାହିଁ । ଚିକିତ୍ସା ବ୍ୟର୍ଥ ହେଉଛି । ତାହାର କଷ୍ଟ ଦୂର କରିବାକୁ ବିଷ ଇଞ୍ଜେକସନ୍ ଦେଇ ତାକୁ ମାରିଲେ ପାପ ଲାଗିବ କି ?

ପ୍ରଶ୍ନ—୨ ଆରୋଗ୍ୟ ହେଉ ନ ଥିବା କର୍କଟ ବା ଭାଇରସର ରୋଗୀ ତାହାର ଘୋର ଅଭାବ ଭିତରେ ଏମିତି ରୋଗି ରୋଗି ମଲେ ସେ ପାପ କାହାକୁ ଲାଗିବ କି ?

ପ୍ରଶ୍ନ—(୩) ମୂଷାକୁ ନ ମାରି ଜନ୍ତାରେ ଧରି ଘୋର ବେଳେ ଘରଦୁଆର ପାଖରେ ବୁହାକୁଢ଼ା ଛାଡ଼ିଲେ କପରି ଧର୍ମ ଓ ପାପ ହୁଏ ?

ପ୍ରଶ୍ନ—(୪) ବଳକର କୁଟୁମ୍ବ ପୋଷଣ ଗାଈ ବୁଢ଼ୀ ହେଲ ପରେ ମାଳକର ଅବସ୍ଥା ଚଳଚଳାନ୍ତ ହୋଇଥିଲ ବେଳେ ଗାଈକୁ ସେ କଂସେଇକୁ ବକି ନଜର ପେଟକୁ ପୋଷିବ ନା ଶୁଖେଇ ଶୁଖେଇ ଗାଈକୁ ମାରିବ ? ଧର୍ମ ଓ ପାପର ସୀମା ରେଖା କେଉଁଠି ?

ପ୍ରଶ୍ନ—(୫) ଗରିବ ପରିବାରକୁ ଚଳାଉଥିବା ସଜନାଗଛରେ ବା ସଉକନଆ ପରିବାରକୁ ଖୁସି କରୁଥିବା ମୂର୍ଷ ୁଣ୍ଡା ଫୁଲଗଛରେ ଅତ୍ୟନ୍ତ ଅତିରକ୍ତ ସଁବାଳୁଆ ହେଲେ ସାବୁନ ପାଣି ବା ଫିନାଇଲ ଆଦ ପଡ଼ିବ କ ନାହିଁ ?

ପ୍ରଶ୍ନ—(୬) ବର୍ଷଣାର ଛାରପୋକ—କଆଖ ବା ମଶାଖ ଭିତରର ଗଣ୍ଡାଏ ମଶା ଶୁଆଇ ନ ଦେଲେ ସ୍ୱାସ୍ଥ୍ୟ ଅନଦ୍ରା ରହିବ ନା ପ୍ରତକାର କରିବ ?

ଘୋଷାଙ୍କ ଅହିଂସା ଓ କାରବାଖ ଅହିଂସା କ'ଣ ଏକା ବିଷୟ ?

କଏ ଜାଣେ ? ଉତ୍ତର କ'ଣ ? ନର୍ଭୁଲ କ'ଣ ?...ଜୈନ ସାଧୁ ଓ ଜୈନ ଶାସ୍ତ୍ର କହିଛନ୍ତି କ ?

ଖାଇଲାବେଳେ ଖାଦ୍ୟର ସୁଆଦକୁ ଭଲକରି ଠଉରେଇବାକୁ ଖାଦ୍ୟକୁ ଏ-କଳରୁ ସେ-କଳକୁ ନେବ ନାହିଁ । (୨) କୁଣ୍ଡେଇ ହବନାହିଁ । ଇଏ ପାପ ଭିତରେ ଗୁମାରି ହୁଏ । (୩) ଆଖିକୁ ମଳିବ

ନାହିଁ । (୪) ଗଛକୁ ଆହୁଜ ହାଲଆ ମାରବ ନାହିଁ । (୫) ସମୁଦ୍ରଲୁଣ ବା ପାହାଡ଼ର ଲୁଣ ଖାଇବା ପାପ । (୬) ସ୍ୱେର ଶ୍ରମଣର ଜନ୍ମସ୍ଥ ଛଡ଼େଇ ନେଲେ ସେ ଚୁପ୍ ରହିବ । (୭) ସ୍ୱେର ଅନ୍ତନ୍ତ ଜାଣିପାରଲେ ଅନ୍ୟ ରାସ୍ତା ଧରବ ନାହିଁ (୮) ଆମ୍ବତୋଟା ଓ ଆଖୁ କଅାରରୁ ଖାଇଲାବେଳେ ଅତ୍ୟନ୍ତ ସାବଧାନ ରହିବ ଯେମିତି ଜୀବ-ହତ୍ୟା ହବନାହିଁ । (୯) କନ୍ତୁ ଗୃହସ୍ଥ ପାଖରୁ ଛୁଞ୍ଚ ସୂତା, ନଖ-କଟା, କାନ-ଖୁମ୍ପା ବ୍ୟବହାର ପାଇଁ ମାଗିବା ପାପ ନୁହେଁ । [ ଆଠ ଓ ନଅ ଠିକ୍ ବୁଝି ହେଉନାହି । (୧୦) ପରସ୍ପର ଛୁଆଁ ଛୁଇଁ, କୁଣ୍ଢିଆ-କୁଣ୍ଢୀ, କାମୁଡ଼ା-କାମୁଡ଼ି, ଉଙ୍କୁଣି ମରାମରି ହେଉଛି ପାପ କର୍ମ । (୧୧) ହଳ ହେଇଥିବା, ବା ବୁଣା ହୋଇଥିବା ବା ଗଛ ହୋଇଥିବା ବଲ ଓ ଘାସ ଇତ୍ୟାଦ ଉପରେ ଝାଡ଼ା ପରସ୍ରା ମନା ।

ସାଧାରଣ ଲୋକ ପାଇଁ ସବୁ ଧର୍ମ ଅଡ଼୍ଆ ।…ବୌଦ୍ଧ ମତ ହେଲ ମନର ପାପ ସବୁଠାରୁ ଗୁରୁତର । ଜୈନ ମତ ହେଲା ଦେହର ପାପ ସବୁଠାରୁ ଅଧିକ ।

ଜୈନ ଶାସ୍ତ୍ର ସୂତ୍ରଟୀକାଙ୍କରେ ଗୋଟିଏ ଉଲ୍ଲେଖ ରହିଛି । ଅକାଳରେ ବାପା ତା'ର ପୁଅକୁ ମାରି ଖାଇଗଲ । ସେଇ ମାଂସକୁ ସେ ଜୈନ ଶ୍ରମଣଙ୍କୁ ଦେଲ ।…ବାପାକୁ ପାପ ଲାଗିବ ନାହିଁ । ବାବାଜୀକୁ ପାପ ଲାଗବ ନାହିଁ · · କାରଣ ମନ ପବିତ୍ର ରହିଛି ।

ଜୈନ ମତର ପ୍ରାଧାନ୍ୟ ଗୁଜରାଟ ଓ ରାଜସ୍ଥାନରେ ରହିଛି । ଇଏ ହେଲେ ମରୁ ଅଞ୍ଚଳ—ମରୁଡ଼ିର ଦେଶ । ଏହାର ତାତ୍ତ୍ୱିକ ସମୀକ୍ଷା ମହାନଦୀର ଉର୍ବର ଅବବାହିକାରେ କରି ବସିଲେ ପ୍ରମାଦ ହେବ । ଏଇ ମରୁଡ଼ି ହେଉଛି ବର୍ଷବର୍ଷର ସାଥୀ । ଜେତେକଙ୍କ ପାଇଁ ଜନ୍ମରୁ ମରଣଯାଏ ସାଥୀ । ତେଣୁ ସୂତ୍ରକାରଙ୍କ ଉପଯୁକ୍ତ ଉପଦେଶ ଦେଇଛନ୍ତି ।

ଜୈନ ଶ୍ରମଣ ମଧ୍ୟ ବୁଦ୍ଧିମାନ ଓ ବିବେକୀ ମଣିଷ । ସେମାନେ ପଚାରନ୍ତି—ପାପର ହେତୁ କ'ଣ ?...ଏଇ ଜନାନାମାନେ ନା ପାଣି (ଅଣ୍ଡା ପାଣି) ?...କିଏ ଜାଣେ । ଏହି ଧର୍ମକୁ କିଏ ବା ଠିକ୍ ବୁଝିଛି ?...ଗୃହୀ ଜ୍ୟୋତିଷ, ସାମୁଦ୍ରିକ (ହସ୍ତରେଖା) ଗୁଣିଗାରେଡ଼ି ଶିଖିଥିବା ।...ଲୋକେ ପସନ୍ଦ କରିବେ ।

ତେଣୁ ଜୈନ-ଆଚାର୍ଯ୍ୟମାନେ ସମାଧାନ ଦେଲେ ଯେ କେତେକ ଗୃହସ୍ଥ ଜୈନ ଶ୍ରମଣଙ୍କଠାରୁ ଉଚ୍ଚ ଶ୍ରେଣୀର । କିନ୍ତୁ ଜୈନ-ସନ୍ଥ ସବୁଠାରେ ଉଚ୍ଚଶ୍ରେଣୀର ଗୃହସ୍ଥ-ସାଧକଙ୍କ ଉପରେ । କାରଣ ତାଙ୍କର ତ୍ୟାଗ ଅଛି । ସମ୍ପତ୍ତି ନାହିଁ । ନିଜର ଦେହ ଓ ପ୍ରାଣ ପ୍ରତି ମମତା ନାହିଁ, କାମ୍ୟ କିଛି କର୍ତ୍ତବ୍ୟ ନାହିଁ ।

ହିନ୍ଦୁମତ ଏହି କାରଣରୁ ଶୁଦ୍ଧପୂତ ଗୃହସ୍ଥ ଧର୍ମକୁ ଚିନ୍ତାଗ୍ରସ୍ତ ସାଧୁ ବା ବାବାଜୀଙ୍କଠାରୁ ଉଚ୍ଚ ସ୍ଥାନ ଦେଇଥିଲା । ସେଥିରେ ରହିଲା ଲୁଣ, ଖଟା, ରାଗ ଇତ୍ୟାଦି ଷଡରସକୁ ନିୟନ୍ତ୍ରଣ କର ବା ଏକାବେଳକେ ଛାଡ଼ିଦିଅ ।

ଶୁଣ୍ଡ କଥାରେ ସିଦ୍ଧି ଆସେ ନାହିଁ । ସତ୍ୟ ହେଉଛି ସିଦ୍ଧିର ମାର୍ଗ । ଈଶ୍ୱରଙ୍କୁ ପାଇବା ଆଗରୁ ନିଜର ବିବେକକୁ ନିର୍ମଳ କର ।

ତଥାପି ଜୈନ ମତରେ ଅନେକ ବିସ୍ମୟକର ତଥ୍ୟ ବିଦ୍ବତ ପୁରୁଣା ଦିନରୁ ଚଳୁଛି । (୧) ତୁଷାର ବିନ୍ଦୁ Hoar Frost ତୁଷାର କୁହୁଡ଼ି, କୁଆପଥର, ଜାକର ଇତ୍ୟାଦିଙ୍କର ଜୀବନ ଅଛି । ଏଥିରେ Water bodies ଅଛନ୍ତି । (୨) ଯେତେ ଗରମ ବା ଝାଞ୍ଜିଆ ହେଲେ ମଧ୍ୟ ଗାଧୋଇବ ନାହିଁ । (୪) ବ୍ରାହ୍ମଣଙ୍କୁ ହତ୍ୟା କଲେ ବ୍ରହ୍ମଜ୍ଞାନ ଆସେ । (୫) ବୁଦ୍ଧ, ଗୌତମ, ବ୍ରାହ୍ମଣ ଆଦି ଶବ୍ଦ ବିଗୁଡ଼ି ହୋଇ

ଜୈନଶାସ୍ତ୍ରରେ ରହିଛି । (୬) ବୁଦ୍ଧଙ୍କର ଘୋଡ଼ାର ନାମ କନ୍ଥକ ଜୈନ ରାଜାଙ୍କର ଘୋଡ଼ାର ନାମ କମ୍ବୋଗ । (୭) ଶଙ୍ଖ, ଚକ୍ର, ଗଦା ଶୋଭିତ ବାସୁଦେବ ଯେପରି ବର୍ଗୋତ୍ତମ, ସେହିପରି ବିଶେଷ ଜ୍ଞାନୀ ଜୈନ ସାଧକ ମଧ୍ୟ ସମସ୍ତଙ୍କ ଉପରେ । (୮) ବ୍ରହ୍ମଚର୍ଯ୍ୟ ସାଧନାରେ ଅନୁପମ ପାଇଁ ଶ୍ରମଣ ମାନସିକ ବେଗର ବେଗୀ ହୋଇପଡ଼ନ୍ତି··· ତେଣୁ ଉପଦେଶ ଥିଲା ଯେ ଗୋଟିଏ Thought Picture କୁ ଧରି ରଖିବ । (୯) ଆତ୍ମା ଅଛି···ନୈତ୍ୟବାଦ । ଆତ୍ମା ନାହିଁ ତେଣୁ କ୍ଷଣିକ ବାଦ ବା ଅନୈତ୍ୟ ବାଦ । ··ଭକ୍ତି ଦ୍ୱାରା ମୁକ୍ତି···ବୈନାୟିକ··· ମୁକ୍ତି ପାଇଁ ଜ୍ଞାନ ଅବଶ୍ୟ ଦରକାର—ଅଜ୍ଞାନବାଦ (୧୦) ପାରି ପରି ସନ୍ତ ହୋଇ ଜୀବନ କଟାଇବ । ସନ୍ଦେହ ହେଲେ କଣର ପଶୁ କଥା ଭାବି ଦେଖିବ । ପଶୁର ସାଥୀ ନାହିଁ । ପଶୁ ଦେହ ଖରାପହେଲେ ଚିକିତ୍ସା ନାହିଁ । (୧୧) ନରକର ବିବରଣରେ ଲୋମ-ଠାକୁରା ବର୍ଣ୍ଣନା ଅଛି । ପାପ ମାନେ ନରକର ଦୁଃଖ ।

ଜୈନ ଧର୍ମ ହିନ୍ଦୁ ବୈଶ୍ୟମାନଙ୍କର ଧର୍ମ । ଜୈନ୍ୟମାନେ ପ୍ରାୟ ସମସ୍ତେ ଧନୀ ।

●

# ଧର୍ମଶାସ୍ତ୍ରର ଜାଣିବା କଥା

୧ । ସଂସ୍କୃତ ଦେବଭାଷା ନୁହେଁ । ଅନ୍ୟାନ୍ୟ ଭାଷା ପରି ଏହା ଗୋଟିଏ ପୁରୁଣା ଭାଷା । ଭାରତର ଧର୍ମଶାସ୍ତ୍ରମାନ ସଂସ୍କୃତରେ ଲେଖା ।

୨ । ସଂସ୍କୃତ ହେଉଛି ମାର୍ଜିତ ଭାଷା । ପ୍ରାକୃତ ହେଉଛି ଅ-ସଂସ୍କୃତ ବା ଅ-ମାର୍ଜିତ ଭାଷା । ପ୍ରାକୃତରୁ ସଂସ୍କୃତ ହୋଇଛି । ସଂସ୍କୃତର ଅପଭ୍ରଷ୍ଟ ପ୍ରାକୃତ ନୁହେଁ ।

୩ । ପାଲି ହେଉଛି ଉତ୍ତର ଭାରତର ହିମାଳୟର ପାଦଦେଶର ଗୋଟିଏ ଆଞ୍ଚଳିକ ଭାଷା । ଏହାର ଶବ୍ଦକୋଷ (ସଂସ୍କୃତର ଅମରକୋଷ ପରି) ବା ବ୍ୟାକରଣ (ପାଣିନୀଙ୍କର ବ୍ୟାକରଣ ପରି ବିଧିବଦ୍ଧ ପାଠ୍ୟ ହିସାବରେ ଜଣା ନାହିଁ । ବୌଦ୍ଧଧର୍ମର ପ୍ରତିଷ୍ଠାତା ଶାକ୍ୟମୁନି ପାଲି ଭାଷା ବ୍ୟବହାର କରୁଥିଲେ । କାରଣ ସଂସ୍କୃତ ଥିଲା ବ୍ରାହ୍ମଣମାନଙ୍କର ଧର୍ମଶାସ୍ତ୍ରର ଭାଷା ।

୪ । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ମଧ୍ୟରେ ଖ୍ରୀଷ୍ଟ ଜନ୍ମ ପର୍ଯ୍ୟନ୍ତ ଶାସ୍ତ୍ରର ଏକାଧିପତ୍ୟ ପାଣ୍ଡିତ୍ୟ ନେଇ ବିବାଦ ଲାଗିରହିଥିଲା । ପଶୁରାମ ଅବତାରରେ ଓ ମହାଭାରତ ଯୁଦ୍ଧରେ କ୍ଷତ୍ରିୟ ଶକ୍ତି ଦୁର୍ବଳ ହୋଇଗଲା । ବ୍ରାହ୍ମଣମାନଙ୍କର ସଂଖ୍ୟା ବଢ଼ିଲା, ଅଣ-କ୍ଷତ୍ରିୟ-ମାନେ ଶାସକ ହେଲେ । ବ୍ରାହ୍ମଣମାନେ ଏହି ଅଣ-କ୍ଷତ୍ରିୟ ଶାସକମାନଙ୍କୁ ସମର୍ଥନ କଲେ । ମହାଭାରତ ଯୁଦ୍ଧ ଏହି ଚଳିତ ଅଠାଅଶି ମସିହାକୁ ପାଞ୍ଚହଜାର ବର୍ଷ ତଳର କଥା ।

୫ । ମହାଭାରତ ଯୁଦ୍ଧ ପରେ ଶାସ୍ତ୍ରରେ ଅର୍ଥ ଅର୍ଥାନ୍ତର ପାଇଁ ଓ ଦେବତାଙ୍କର ମନୋରଞ୍ଜନ କାର୍ଯ୍ୟର ଏକାଧିପତ୍ୟ ବ୍ରାହ୍ମଣମାନେ ପାଇଲେ ଏହା ହେଲା ଜନ୍ମଗତ ଅଧିକାର ।

(କ) ଏହା ବିରୁଦ୍ଧରେ ଦୁଇଟି କଥା ଆସିଲା । ଅ-ବ୍ରାହ୍ମଣମାନେ ନିଜକୁ ପରିବ୍ରାଜକ ବୋଲାଇ ସାରା ଭାରତରେ (ବୁଝିବାକୁ ହେବ ଉତ୍ତର ଭାରତର କାଶ୍ମୀର, ରାଜସ୍ଥାନ, ଗୁଜୁରାଟ, ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ ଓ ବିହାର ) ଧର୍ମର ସାର ବୁଝାଇଲେ । ତାହା ସାଙ୍ଗରେ ପ୍ରଚାର କଲେ ଯେ, ଧର୍ମର ବ୍ୟାଖ୍ୟା ଓ ଭାଷ୍ୟ କରିବାର ଅଧିକାର ସମସ୍ତଙ୍କର ରହିଛି ।

(ଖ) ଏହି ପରିବ୍ରାଜକ (ହିନ୍ଦୁ) ଅନୁକରଣରେ ବୌଦ୍ଧମାନେ ଶ୍ରମଣ ଗୋଷ୍ଠୀ ଚଳାଇଲେ । ବୌଦ୍ଧମତ ସଙ୍ଘ ବା ସମଷ୍ଟି ଉପରେ ଜୋର ଦେଲା... ...ସଙ୍ଘ ଶରଣଂ ଗଚ୍ଛାମି । ବା ସଙ୍ଘ (ଲୋକ ସମାଜର) ଶରଣ ପଶିଲା ।

୬ । କିନ୍ତୁ ସବୁ ଧର୍ମ ସମାନ । କାରଣ ମଣିଷମାନେ ଏକ ପ୍ରକାରର ହୋଇଥାନ୍ତି । ଗୋଟିଏ ଅଞ୍ଚଳର ଭାବଧାରା ଅନ୍ୟ ଅଞ୍ଚଳରେ ଆପଣା ଛାଏଁ ପ୍ରତିଫଳିତ ଓ ପ୍ରତିଧ୍ୱନିତ ହୋଇଥାଏ ।

୭ । ହିନ୍ଦୁମାନେ ହେଉଛନ୍ତି ସୃଷ୍ଟିର ସାତଟି ମୂଳ ଜାତି ବା ରୁଟ୍ ରେସ୍ ( ROOT RACE )ର ପଞ୍ଚମ ପିଣ୍ଡ । ଏହାର ଅଂଶ ଭିନ୍ନଥିଲା ମିଶର ବା ଇଜିପ୍ଟ ଯାଏ । ଏବେ ଇଜିପ୍ଟ ମୁସଲମାନ ରାଜ୍ୟ । ଏହା ପୂର୍ବରୁ ଇଜିପ୍ଟର ଧର୍ମ-ଧାରଣା ଭାରତ ସହିତ ସମାନ୍ତର ।

୮ । ଭାରତର ଗଙ୍ଗା ନଦୀ ଯେପରି ମିଶରର ନାଇଲ ନଦୀ ସେହିପରି । ପ୍ରଭେଦ ହେଉଛି ଯେ, ଆମେ ଗଙ୍ଗାମାତାଙ୍କୁ ପୂଜା କରୁ । କିନ୍ତୁ ଇଜିପ୍ଟରେ ସେମାନେ ନାଇଲ ନଦୀର ଦେବତା ସୃଷ୍ଟି କରିଥିଲେ । ସେଇ ଦେବତାଙ୍କର ନାମ ହପି (HAPI) ।

(କ) ହିନ୍ଦୁମାନଙ୍କର ଷଣ୍ଢ ଦେବତା । ମହାଦେବଙ୍କର ଷଣ୍ଢ ବା ଶିବଙ୍କର ବାହୁଆ ବଳଦ ପୂଜା ପାଏ । ଧର୍ମଶାସ୍ତ୍ରରେ ମଧ୍ୟ ଏସବୁର ଉଲ୍ଲେଖ ଅଛି । ମିଶରରେ ଷଣ୍ଢ ଦେବତା ଥିଲେ । ତାଙ୍କର ନାମ ଅପିସ୍ (APIS) ।

(ଖ) ଇଜିପ୍ଟ ବା ମିଶରରେ ସୂର୍ଯ୍ୟପୂଜା ଠିକ୍ ଭାରତବର୍ଷ ପରି ଥିଲା । ଭାରତଠାରୁ ଅଧିକ ପରିସରରେ ସୂର୍ଯ୍ୟ ପୂଜା ମିଶରରେ ଚାଲୁଥିଲା ।

(ଗ) ହୋରସ୍ (HORUS) ହେଉଛନ୍ତି ବାଳ-ସୂର୍ଯ୍ୟ ବା ଉଇଁ ଆସୁଥିବା ସୂର୍ଯ୍ୟ ଦେବତା ।

(ଘ) ସେବେକ୍ (SEBEK) ହେଉଛନ୍ତି ସୂର୍ଯ୍ୟଙ୍କର ରୁଦ୍ର ରୂପର ଦେବତା । ମିଶର ଥିଲା ଅତ୍ୟଧିକ ଉତ୍ତାପର ଦେଶ—ସାହାରା ଭଳି ମରୁଭୂମିର ଅଞ୍ଚଳ । ନାଇଲ ନଦୀ ପାଇଁ ମିଶର ମରୁଭୂମି ପାଲଟି ନ ଥିଲା ।

(ଙ) ସୂର୍ଯ୍ୟଙ୍କର ଧ୍ୱଂସକାରୀ ( ଶୁଖାଇବା, ଜଳାଇବା ଇତ୍ୟାଦି) ଶକ୍ତିର ଦେବତା ହେଲେ ସେରକିତ୍ (SERQIT) ।

(ଚ) ଏହାଠାରୁ ମାରାତ୍ମକ ସୌରଶକ୍ତିର ଦେବତାଙ୍କର ନାମ ହେଲା ସେଟ୍ (SET) ।

(ଛ) ଆଉ ଗୋଟିଏ ଦେବତା ନିଶିଥ ସୂର୍ଯ୍ୟଙ୍କ (Night Sun) ପାଇଁ ବସାଇଥିଲେ ସେ ହେଲେ ସେକେର୍ (SEKER) ।

(ଜ) ସୂର୍ଯ୍ୟଙ୍କର ପ୍ରଖର ଉତ୍ତାପର (ଯେଉଁଠି ରାମାୟଣର ଜଟାୟୁଙ୍କର ଡେଣା ପୋଡ଼ି ଯାଇଥିଲା) ଦେବତା ହେଲେ ସେଖମିତ୍ (SEKHMIT) ।

(ଝ) ଏହାଛଡ଼ା ଆଲୋକ-ଉତ୍ତାପ-ବାୟୁଙ୍କର ଦେବତା ହେଲେ ଶୁ (SHO) କେବଳ ଆଲୋକ-ଉତ୍ତାପର ଦେବାତା ହେଲେ ମେନହିତ୍ (MENHIT) ।

(ଞ) ଯୁଦ୍ଧର ଦେବତା ଓ ସୂର୍ଯ୍ୟ ଦେବତା ମିଶି ଗୋଟିଏ ଠାକୁର ହେଉଛନ୍ତି । ତାଙ୍କର ନାମ ମନ୍ଥୁ—ରା (MENTHU—RA) ।

(ଠ) ସୂର୍ଯ୍ୟଙ୍କର ଅସ୍ତବେଳରେ ସୂର୍ଯ୍ୟଦେବତା ହେଲେ ଅଥୁ (ATHU) ।

(ଡ) ସେମିତି ମିଶରର ଅନ୍ୟଦେବତା ଅଛନ୍ତି ।

(ଢ) ବାଆ (BA) ପ୍ରାଣବାୟୁର ଦେବତା ।

(ଣ) ବେସ୍ (BES) ଯୁଦ୍ଧର ଦେବତା ଓ ସଙ୍ଗୀତର ଦେବତା ।

(ତ) ଏଇ ଦେବତା ଓ ନୃତ୍ୟର ଦେବତା ଏକସ—ହିନ୍ଦୁମତର ଶିବଙ୍କର ତାଣ୍ଡବ ନୃତ୍ୟପର ।

(ଥ) ପଟ—(PTAH) ଆମର ବ୍ରହ୍ମାଙ୍କ ପର । ମିଶରର ସର୍ବପ୍ରଥମ ଦେବତା ବଳ-ସ୍ଥାର୍ଯ୍ୟ-ପ୍ରାଣର ଦେବତା । Strenth, Life, Stability,

(ଧ) ପୂଜାବିଧିରେ ଆସନ ବା TET (ଟେଟ୍) ପୂଜା କଲାବେଳେ ମେରୁଦଣ୍ଡ ସିଧା ରହିବ ।

(ନ) ଗାଈ ମୁଣ୍ଡ ଥିବା ଦେବୀ HATHOR (ହାଥୋର) । ଇଏ ହେଲେ ସୌନ୍ଦର୍ଯ୍ୟ, ପ୍ରୀତି ଓ ଆନନ୍ଦର ଠାକୁରାଣୀ । ହିନ୍ଦୁମତରେ ମାଆ ଦୁର୍ଗା ଜଗତଜନନୀ ରହିଛନ୍ତି । ଚଣ୍ଡୀପାଠ ବେଳେ ମାଆ ଚଣ୍ଡୀଙ୍କର ବିଭିନ୍ନ ରୂପ ପ୍ରକାଶ ପାଏ ।

(ପ) ମିସରର ଦେବତା ଖେନେମୋ (KHENEMO) ଅନ୍ୟ ଦେବତାଙ୍କୁ ମଣିଷଙ୍କୁ ସୃଷ୍ଟି କରିଥିଲେ । ଇଏ ହିନ୍ଦୁମତର ମୁଖ୍ୟ ଦେବତା ବିଷ୍ଣୁ । ବ୍ରହ୍ମା-ବିଷ୍ଣୁଙ୍କର ଯୁଦ୍ଧ ଓ ଶିବଙ୍କର ସେଇ ସମାଧାନରେ ଅଂଶ-ଗ୍ରହଣ ସମସ୍ତେ ଜାଣନ୍ତି ।

(ଘ) ହିନ୍ଦୁ ମାଆ-ଜଗତ ଜନନୀଙ୍କର ଅନୁରୂପ ମିଶରର ଦେବୀ ହେଲେ ନେତ୍ (NET)।

(ଙ) ମାତ୍(MAAT) ମିଶରର ନ୍ୟାୟର ଦେବୀ। ହିନ୍ଦୁମତରେ ଏଇ ଦେବୀ ନାହାନ୍ତି। କିନ୍ତୁ ତତ୍ତ୍ୱକୁ ଉଚ୍ଚ ସ୍ଥାନ ଦିଆଯାଏ। ଭୂନୈତିକ ନ୍ୟାୟ ଅବଧାରଣୀୟ।

୯। ପାର୍ସି ମତରେ ହିନ୍ଦୁ ଜଗତପରି ଏତେ ଦେବ ଦେବୀ ନାହାନ୍ତି। ପାର୍ସିମାନଙ୍କୁ ଜୋରାଷ୍ଟ୍ରିଆନ୍ କୁହାଯାଏ। ତାଙ୍କର ସର୍ବ ପ୍ରଧାନ ଦେବତା ହେଲେ ଅହୁର ମଜଦା (AHURAMAZDA)।

(କ) ତାଙ୍କର ପ୍ରଧାନ ଶତ୍ରୁ ହେଲେ ଅହିରମନ୍ (AHIRMAN)। ଏଇ ଦେବତା ଓ ଦାନବଙ୍କର ବଳ କଷାକଷି ଉପନିଷଦର 'ଓଁ'ର ବିକାଶରେ (ପ୍ରଣବ ଉପନିଷଦ) ରହିଛି।

(ଖ) ଆହୁରମଜଦା (ଆମର ବିଷ୍ଣୁଙ୍କ ପରି) ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ବା ସୃଷ୍ଟି-ସ୍ଥିତି-ପ୍ରଳୟରେ ବିଭକ୍ତ ନୁହନ୍ତି। ହିନ୍ଦୁମତରେ ଅବତାର ରହିଛନ୍ତି। ପାର୍ସିମାନଙ୍କର ମତ ହେଲା ଯେ ଏକମାତ୍ର ଓ ମୁଖ୍ୟ ଦେବତା ଅହୁରମଜଦାଙ୍କର ସାତ ଜଣ ସହାୟକ ଅଛନ୍ତି। ଏମାନଙ୍କୁ ଏକତ୍ର କୁହାଯାଏ AMESHA SPENTA (ଅମେଷ ସ୍ପେଣ୍ଟା) ଏଇ ସହାୟକମାନେ ଆଦ୍ୟରୁ ଥିଲେ କିମ୍ବା ବିଭିନ୍ନ ସମୟରେ ଆସିଥିଲେ ବୁଝାଯାଏ ନାହିଁ।

(ଗ) ପାର୍ସିମତ ପାରସ୍ୟରେ ଜନ୍ମ। ପାରସ୍ୟରେ ଆଜ ତାହା ବର୍ତ୍ତି ନାହିଁ। ଏହା ଲେଖା ହୋଇଥିଲା ପେଲଭୀ (PEHLVI) ଭାଷାରେ ସେଇ ଭାଷା ମରିଯାଇଛି। ପାର୍ସିମାନେ ଅଗ୍ନିର ଉପାସକ। ଅଗ୍ନି ତାଙ୍କର ମୁଖ୍ୟ ଦେବତା।